# ଶୋଷଣ ମୁକ୍ତ
# ଗ୍ରାମ ରାଜ୍ୟ



**ଶ୍ରୀ ଶରଜା ଶଂକର ଦାଶ**

# ଶୋଷଣ ମୁକ୍ତ ଗ୍ରାମ ରାଜ୍ୟ

ଲେଖକ :

ଶ୍ରୀ ଦ୍ୱରକା କିଂକର ଦାସ

ଯାଜପୁର

ପ୍ରକାଶକ :

କିଶୋର ପ୍ରକାଶନୀ

ଗୁଡ଼ିନାଟୋଳ, କଟକ - ୨

ମୂଲ୍ୟ—ଟ ୪-୦୦

# ଉତ୍ସର୍ଗ ପତ୍ର

ଯେ ଏକ ଅଦ୍ୱିତୀୟ ଅରୂପ ହୋଇ ବି ବିଶ୍ୱରୂପ, ଯେ ଅବ୍ୟକ୍ତ ପୁଣି ବ୍ୟକ୍ତ, ନିରାକାର ପୁଣି ସାକାର, ଅନନ୍ତ ପୁଣି ଶାନ୍ତ, ସନାତନ ପୁଣି ଲୀଳାମୟ, ଯେ ଶାସକ ପୁଣି ଶାସିତ, ସଜ୍ଜନ ପୁଣି ଦୁର୍ଜ୍ଜନ, ଯେ ସ୍ତ୍ରୀ ପୁଣି ପୁରୁଷ, ଯେ ପିତା, ମାତା, ସ୍ୱାମୀ, ସ୍ତ୍ରୀ, ପୁତ୍ର, କନ୍ୟା, ପଡ଼ୋଶୀ, କଳା, ଗୋରା, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ, ଆସ୍ତିକ, ନାସ୍ତିକ ପ୍ରଭୃତି ସବୁ ବେଶ ଧରି ଖେଳ ଯାଉଛନ୍ତି, ସେହି ଅଖିଳପତିଙ୍କ ଶ୍ରୀଚରଣରେ ଏହାକୁ ଉତ୍ସର୍ଗ କଲି ।

ହରକାଙ୍କର

ତା ୩ । ୬ । ୧୯୬୭

# ଦ୍ୱିତୀୟ ସଂସ୍କରଣରେ

## ଲେଖକଙ୍କ ଅଭିମତ

"ଏହି କଣ ଗ୍ରାମସ୍ୱରାଜ୍ୟ ?" ଏହି ନାମ ଦେଇ ଯୋଡ଼ିଏ ଭାଗରେ ୧୯୫୦-୫୧ ମଧ୍ୟରେ ଏହାକୁ ପ୍ରକାଶ କରିଥିଲି । ଏହି ଦ୍ୱିତୀୟ ସଂସ୍କରଣରେ ଏହାର ପୂର୍ବନାମ ବଦଳାଇ ଶୋଷଣମୁକ୍ତ ଗ୍ରାମସ୍ୱରାଜ ନାମ ରଖିଲି । କାଗଜର ଦୁର୍ମୂଲ୍ୟତା ଦେଖି ପୁସ୍ତକର କଳେବରଟିକୁ ସଂକ୍ଷିପ୍ତ କରି ଦୁଇଟି ଭାଗରେ ବିଭକ୍ତ ନକରି ଗୋଟିଏ ମାତ୍ର ରଖିଛି । ପୁସ୍ତକର ମୂଳଭାବ ଯାହା ଥିଲା ତାହା ହିଁ ରହିଛି । ମାତ୍ର ମୂଳଗ୍ରନ୍ଥର ପ୍ରକାଶଶୈଳୀ ଓ ଭାଷା ସମ୍ପୂର୍ଣ୍ଣ ନବ କଳେବର ଗ୍ରହଣ କରିଛି । ସର୍ବଶେଷରେ ମୋର ବନ୍ଧୁ ଶ୍ରୀଯୁକ୍ତ ବଂଶୀଧର ନାୟକ ଏହି ପୁସ୍ତକଟିର ପ୍ରକାଶ ଦାୟିତ୍ୱ ନେଇଥିବାରୁ ମୁଁ ତାଙ୍କଠି ଚିରକୃତଜ୍ଞ ।

**ଶ୍ରୀ ଗିରିଜା ଶଙ୍କର ରାୟ**

# ପ୍ରକାଶକଙ୍କ କଲମରୁ

ଶ୍ରୀ ବିରଜା ଶଂକର ଦାସଙ୍କ ପ୍ରକୃତନାମ ହେଉଛି ଶ୍ରୀ ଲକ୍ଷ୍ମଣ ମିଶ୍ର ସେ କି ନିଜକୁ ତାଙ୍କର ଲିଖିତ ପୁସ୍ତକମାନଙ୍କରେ ବିରଜାଙ୍କର ନାମରେ ପରିଚିତ କରାଇଛନ୍ତି । ତାଙ୍କର ରଚିତ ନାଟକ, କାବ୍ୟ କବିତା, ପ୍ରବନ୍ଧ ଇତ୍ୟାଦିରେ ତାଙ୍କର ପ୍ରକୃତ ନାମ ତଳକୁ ବିରଜା ଶଂକର ବୋଲି ଯୋଡ଼ିଏ ଶିଢ ବରାବର ବନ୍ଧନୀ ମଧ୍ୟରେ ରହିଥିବାର ପାଠକମାନେ ଦେଖିବେ ଏହି ଗୁଡ଼ିକଟିରେ ତାଙ୍କର ଅନୁରୋଧରେ ପ୍ରକୃତ ନାମକୁ ବାଦ ଦେଇ ବିରଜାଶଂକର ଦାସ-ନାମ ରଖାଯାଇଛି ।

ତାଙ୍କର ଜନ୍ମସ୍ଥାନ ଜାଜପୁରର ନରେନ୍ଦ୍ରପୁର ଶାସନରେ । ତାଙ୍କର ଜନ୍ମ ହୋଇଥିଲା ୧୯୦୬ ରେ ସେ ପିଲାଦିନରୁ ଅତି ଗମ୍ଭୀର ଥିଲେ । ନିଜର ଅଧ୍ୟବସାୟ ଓ ଚେଷ୍ଟାରେ ୧୯୩୫ ରେ ରେଭେନ୍ସା କଲେଜରୁ ବି. ଏ. ପରୀକ୍ଷାରେ ପାସ କରି ବି. ଇଡ଼ି ଉପାଧି ପରେ ବିଭିନ୍ନ ହାଇସ୍କୁଲମାନଙ୍କରେ ୧୯୭୨ ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକର କାମ କରୁଥିଲେ । ଭାରତଛାଡ଼ ଆନ୍ଦୋଳନ ବେଳେ ୧୯୪୨ ଅକ୍ଟୋବରରୁ ୨ ବର୍ଷ କାଳ ସେ ପାଟଲିପୁର ହାଇସ୍କୁଲରେ ଶିକ୍ଷକତା କରୁଥିବା ବେଳେ ଗିରଫ ହୋଇ ବ୍ରହ୍ମପୁର ଜେଲରେ ଅଟକ ବନ୍ଦୀ ହୋଇ ରହିଥିଲେ । ଜେଲରୁ ଖଲାସ ହେବା ପରେ ୧୯୭୨ ପର୍ଯ୍ୟନ୍ତ ପୁଣି ଶିକ୍ଷକ ଭାବରେ ସମାଜର ସେବା କରି ବର୍ତ୍ତମାନ ସ୍ୱେଚ୍ଛାରେ ସର୍ବୋଦୟ ପରିବ୍ରାଜକ ଓ ପଦଯାତ୍ରୀ ଭାବରେ ବିନୋବାଙ୍କ ବିଚାର ପ୍ରଚାର କାର୍ଯ୍ୟରେ ଲାଗିଛନ୍ତି । ସେ ୧୯୫୦ରୁ ବିପତ୍ନିକ ତାଙ୍କର ଏକମାତ୍ର ପୁତ୍ର ଶ୍ରୀ ଶଶାଙ୍କଶେଖର ମିଶ୍ର ବି.ଏ ବର୍ତ୍ତମାନ ଏ.ଜି ଅଫିସରେ ଭୁବନେଶ୍ୱରରେ କାମ କରନ୍ତି ।

**ଶ୍ରୀ ବିମ୍ବାଧର ନାୟକ**

**କଟକ ଛାତ୍ରସାଥୀ [illegible]**

# ଉପକ୍ରମଣିକା

ରୁଦ୍ରଙ୍କଦ୍ୱାରା ଦକ୍ଷଯଜ୍ଞର ଧ୍ୱଂସ ଏବଂ ବଳୀବାମନ ଉପାଖ୍ୟାନ ପ୍ରଭୃତି ବିବିଧ ପୌରାଣିକ ଉପାଖ୍ୟାନମାନଙ୍କରେ ଏକ ଏକଂ ଅଭ୍ରାନ୍ତ ଓ ସନାତନ ସତ୍ୟ ନିହିତ ଅଛି । ଅତି ପ୍ରାଚୀନ କାଳରେ ପୃଥିବୀର ସର୍ବତ୍ର ମନୁଷ୍ୟମାନେ ସାମ୍ପ୍ରଦାୟିକ କମ୍ୟୁନିଷ୍ଟିକ ଜୀବନ (Tribal Communistic life) ଯାପନ କରୁଥିଲେ । ଭାରତରେ ପ୍ରାଗ୍ ବୈଦିକ ଓ ବୈଦିକ ଯୁଗରେ ଯେଉଁ ସବୁ ଭିନ୍ନ ଭିନ୍ନ ସମ୍ପ୍ରଦାୟ (Tribes) ଥିଲେ, ସେହି ସମ୍ପ୍ରଦାୟମାନ ଗୋଟିଏ ଗୋଟିଏ ଶ୍ରେଣୀ ବଡ଼ ଆକାରରେ ଏକ ପରିବାରଭୁକ୍ତ ସମାଜ ହିଁ ଥିଲେ । ଏହି ସମାଜକୁହିଁ ବେଦରେ ସଗୁଣ ବ୍ରହ୍ମ ବା ପୁରୁଷସୂକ୍ତୋକ୍ତ ସହସ୍ର ପାଦପାଣି ଚକ୍ଷୁବିଶିଷ୍ଟ ବିରାଟ ପୁରୁଷ ବିଷ୍ଣୁରୂପେ ବର୍ଣ୍ଣନା କରାଯାଇଛି ବୋଲି ଗୋଟିଏ ଦୃଷ୍ଟିରୁ କୁହାଯାଇପାରେ । ସମାଜର ବିକାଶ ସଙ୍ଗେ ସଙ୍ଗେ ଉତ୍ପାଦନ ପ୍ରଣାଳୀର ହେରଫେର (Means of production) ବିବୃଦ୍ଧି ଓ ବିକାଶ ହେଲା, ଏହି ଆଦିମ ବିକାଶଟାକୁହିଁ ବିଷ୍ଣୁଙ୍କର ଯୋଗନିଦ୍ରା ଭଙ୍ଗ ଓ ବ୍ରହ୍ମାଙ୍କର ଉଦ୍‌ଭବ ବୋଲି ବର୍ଣ୍ଣନା କରାଯାଇପାରେ । ଏହି ବ୍ରହ୍ମ ବିଷ୍ଣୁଙ୍କ ନାଭି କମଳରୁ ଜାତ ହୋଇ ମଧ୍ୟ ନିଜର ଅହଂକାର ହେତୁ ବିଷ୍ଣୁଙ୍କୁ ଚିହ୍ନି ପାରିଲେ ନାହିଁ । ବ୍ରହ୍ମା ବିଷ୍ଣୁଙ୍କ ନାଭିକମଳରୁ ଜାତ ହୋଇ ଉପରକୁ ଦୃଷ୍ଟି ନିକ୍ଷେପ କରି ଦେଖିଲେ ଯେ ଜଣେ ଅପୂର୍ବ ଶକ୍ତିଶାଳୀ ତେଜସ୍ୱାନ ପୁରୁଷ ଊର୍ଦ୍ଧ୍ୱକୁ ଊର୍ଦ୍ଧ୍ୱକୁ କାହାକୁ ଯେ ଉଦ୍ଧାତ ହୋଇ ସ୍ତୁତି କରି ଉଠି ଯାଉଛନ୍ତି । ଏହି ପୁରୁଷଙ୍କୁ ସ୍ୱୟମ୍ଭୂ ଶିବ ବୋଲି ବର୍ଣ୍ଣନା କରାଯାଇପାରେ । ବ୍ରହ୍ମା ନିଜକୁ ନାଭିକମଳରୁ ମୁକ୍ତ କରି ନ ପାରି, ଅଥଚ କେଉଁଠୁ ସେ ଜନ୍ମିଛନ୍ତି, ତାହା ବି ସ୍ଥିର କରି ନ ପାରି ଏବଂ ଊର୍ଦ୍ଧ୍ୱରେ ଏକ ମୁକ୍ତ ପୁରୁଷଙ୍କୁ ନିରୀକ୍ଷଣ କରି ଭୟବିହ୍ୱଳ ହୋଇ ପଡ଼ିଲେ । ଏହି ସମୟରେ ବିଷ୍ଣୁଙ୍କ କାନ ମୂଳରୁ ମଧୁ ଓ କୈଟଭ

ନାମକ ଦୁଇଟା ରାକ୍ଷସ ଜାତ ହୋଇ ବ୍ରହ୍ମାଙ୍କୁ ଗିଳିବାକୁ ଉଦ୍ୟତ ହୁଅନ୍ତେ ବ୍ରହ୍ମା କାତର ହୋଇ ପଡ଼ିଲେ । ଏହାପରେ ବିଷ୍ଣୁଙ୍କ ସମ୍ପୂର୍ଣ୍ଣ ନିଦ୍ରାଭଙ୍ଗ ହେଲା ଏବଂ ସେ ମଧୁକୈଟଭଙ୍କୁ ବିନାଶ କରି ବ୍ରହ୍ମାଙ୍କୁ ଅଭୟ ଦେଲେ । ଏହି ମଧୁକୈଟଭ କିଏ ? ବ୍ରହ୍ମାଙ୍କର ଅହଂକାର ଜାତ ଦ୍ୱନ୍ଦ୍ୱ (Self-contradictions) । ଏହି ରାକ୍ଷସ ଦ୍ୱୟ ଶିବଙ୍କୁ ଗିଳିବାକୁ ଉଦ୍ୟତ ହେଲେ ନାହିଁ କାହିଁକି ? କାରଣ, ସର୍ବବନ୍ଧନମୁକ୍ତ ସ୍ୱୟମ୍ଭୂ ଶିବଙ୍କର କୌଣସି ଅହଂକାର ଜନିତ ଦ୍ୱନ୍ଦ୍ୱ ନ ଥିଲା । ଏଣୁ ସେ ବ୍ୟକ୍ତ ହୋଇ ମଧ୍ୟ ଅବ୍ୟକ୍ତଙ୍କୁ ବା ବିଷ୍ଣୁଙ୍କୁ ଜାଣି ପାରିଥିଲେ ।

ବ୍ରହ୍ମାଙ୍କ ଅଙ୍ଗରୁ ଦକ୍ଷପ୍ରଜାପତି ଜନ୍ମ ହେଲେ ଏବଂ ଏହି ଦକ୍ଷପ୍ରଜାପତି ହିଁ ବିଶ୍ୱ ସର୍ଜନା କଲେ ।

ତାହାହେଲେ ଆମେ ଦେଖିଲେ ଯେ, ସମଷ୍ଟି ସମାଜ ବା ଅବ୍ୟକ୍ତହିଁ ବିଷ୍ଣୁ ଅଟନ୍ତି । ଏହି ସମଷ୍ଟି ସମାଜ ବା ଅବ୍ୟକ୍ତ ବିଷ୍ଣୁଙ୍କ ଅଙ୍ଗରୁ ଦୁଇ ଶ୍ରେଣୀର ବ୍ୟକ୍ତି ଜନ୍ମଲାଭ କରନ୍ତି । ଗୋଟିଏ ଶ୍ରେଣୀର ବ୍ୟକ୍ତି ହେଉଛନ୍ତି ଭୋଗଲିପ୍ସୁ, ଅର୍ଥଲିପ୍ସୁ, କ୍ଷମତା ପ୍ରୟାସୀ ଏବଂ ସୃଷ୍ଟି ଅଭିଳାଷୀ ବ୍ରହ୍ମା ଏବଂ ଦକ୍ଷପ୍ରଜାପତି ପ୍ରଭୃତି । ଏହି ଶ୍ରେଣୀର ଅହଂକାରଗ୍ରସ୍ତ ବ୍ୟକ୍ତିମାନେ ସମାଜରୂପୀ ସଗୁଣ ବ୍ରହ୍ମଙ୍କୁ ଉପଲବ୍ଧି କରି ପାରନ୍ତି ନାହିଁ । ଦ୍ୱିତୀୟ ଶ୍ରେଣୀର ବ୍ୟକ୍ତି ହେଉଛନ୍ତି ସର୍ବବିଧ ତୃଷ୍ଣାତ୍ୟାଗୀ, ସର୍ବବନ୍ଧନମୁକ୍ତ ଓ ଅହଂକାର ଶୂନ୍ୟ ଶିବ, ଯେ କି ବ୍ୟକ୍ତି ହୋଇ ବି ଅବ୍ୟକ୍ତର ସନ୍ଧାନ ପାଇଥାନ୍ତି, ଯେ କି ବିଶ୍ୱର ଅନ୍ତରାଳସ୍ଥ ନିର୍ଗୁଣ ବ୍ରହ୍ମ ଏବଂ ବ୍ୟକ୍ତ ସମାଜରୂପୀ ସଗୁଣ ବ୍ରହ୍ମଙ୍କୁ ଉପଲବ୍ଧି କରି ପାରନ୍ତି ।

ସମଷ୍ଟି ବା ସମାଜହିଁ ବିଷ୍ଣୁ । ଏହି ସମାଜଅଙ୍ଗରେ ଥିବା ଅହଂକାରୀ ଧନ-ମଦାନ୍ଧ, କ୍ଷମତା-ମଦାନ୍ଧ ବ୍ୟକ୍ତିମାନେ ହିଁ ଦକ୍ଷ-

ପ୍ରଜାପତି । ଏହି ସମାଜରୂପୀ ବିଷ୍ଣୁଙ୍କ ଅଙ୍ଗରୁ ଜନ୍ମଲାଭ କରି ସମାଜର ବାହାରେ ବାସକରି ସମାଜ ରୂପୀ ବିଷ୍ଣୁଙ୍କୁ ସମ୍ବନ୍ଧ କରି ବା ସର୍ବତ୍ୟାଗୀ, ମୁକ୍ତ ଓ ଅହଂକାର-ଶୂନ୍ୟ ବ୍ୟକ୍ତିମାନେ ଶିବ । ଏହି ସମାଜରୂପୀ ଅଙ୍ଗରେ ବାସ କରୁଥିବା କ୍ଷୁଧାର୍ତ୍ତ କଙ୍କାଳସାର ପ୍ରେତରୂପୀ ସର୍ବହରାମାନେ ରୁଦ୍ରଗଣ ଅଟନ୍ତି ଏବଂ ଏମାନେ ଭୂତନାଥ ଶିବଙ୍କର ସହଚର ଅଟନ୍ତି । ଧନ-ମଦାନ୍ଧ ପୁଞ୍ଜିପତି ଓ କ୍ଷମତା-ମଦାନ୍ଧ ଶାସକରୂପୀ ଦକ୍ଷପ୍ରଜାପତି ଅହଂକାରଗ୍ରସ୍ତ ହୋଇ ସମାଜରୂପୀ ବିରାଟ ପୁରୁଷ ବିଷ୍ଣୁଙ୍କୁ ଭୁଲିଯାଇ ନିଜ ସ୍ୱାର୍ଥରେ ବାଇ ହେଲେ ସର୍ବତ୍ୟାଗୀ ଶିବଙ୍କର ଇଙ୍ଗିତକୁ ହିଁ ଅବମାନନା କରନ୍ତି ଏବଂ ନାନାବିଧ ଆତ୍ମ ପ୍ରତାରଣା ଦ୍ୱାରା ( Self-contradictions ) ଆକ୍ରାନ୍ତ ହୁଅନ୍ତି । ଏହାର ଫଳରେ ସମାଜରୂପୀ ବିଷ୍ଣୁଙ୍କ ଅଙ୍ଗରେ କ୍ଷୁଧାର୍ତ୍ତ, କଙ୍କାଳସାର ପ୍ରେତରୂପୀ ସର୍ବହରାଙ୍କର ସଂଖ୍ୟାବୃଦ୍ଧି ହୁଏ, ଯେଉଁମାନେ ଭୂତନାଥଙ୍କର ମୂର୍ତ୍ତି ଧରି ଧନୀ ଓ ଶାସକ ରୂପୀ ଦକ୍ଷପ୍ରଜାପତିଙ୍କର ଦର୍ପ ଚୂର୍ଣ୍ଣ କରି ଦିଅନ୍ତି ଏବଂ ସମଷ୍ଟିରୂପୀ ମହାବିଷ୍ଣୁଙ୍କ ସେବାରେ ଯେ ବ୍ୟକ୍ତିର ସୁଖ, ଶାନ୍ତି ଓ ଆନନ୍ଦ, ଏହି ସତ୍ୟକୁ ପୁନଃ ପୁନଃ ପ୍ରତିପାଦନ କରନ୍ତି ।

ବଳବାହନ ଏବଂ ରାମ ରାବଣାଦି ଉପାଖ୍ୟାନମାନଙ୍କରେ ଏହିପରି ଶାଶ୍ୱତ ସାମାଜିକ ସମାଧାନ ନିହିତ ଅଛି ।

**ବରଜା କିଙ୍କର**

# ବିଷୟ ସୂଚୀ

**ପ୍ରଥମ ଅଧ୍ୟାୟ**—ଗ୍ରାମରାଜ୍ୟର ରୂପ ।
ଅଯୋଧ୍ୟା ଦେବର ତତ୍ତ୍ୱାର୍ଥ । ରାଷ୍ଟ୍ର ସମାଜର ଏକ ଯନ୍ତ୍ର । ଗାନ୍ଧି ବିନୋବାଙ୍କ ପରିକଳ୍ପିତ ଗ୍ରାମ ସ୍ୱରାଜ୍ୟ ବା ସର୍ବୋଦୟ ସମାଜ ।

**ଦ୍ୱିତୀୟ ଅଧ୍ୟାୟ**—ବାଲ୍ମୀକିଙ୍କ ରାମରାଜ୍ୟ ପରିକଳ୍ପନା ।
ନିର୍ବାଚିତ ମନ୍ତ୍ରୀ, ରାମ ବି ହୋଇପାରନ୍ତି ରାବଣ ବି ହୋଇ ପାରନ୍ତି ଏକତନ୍ତ୍ର ଶାସକ ରାମ ବି ହୋଇ ପାରନ୍ତି, ରାବଣ, ବି ହୋଇ ପାରନ୍ତି ।

**ତୃତୀୟ ଅଧ୍ୟାୟ**—ଦୁଇ ଶ୍ରେଣୀର ଜ୍ଞାନୀ । ସର୍ବତ୍ୟାଗୀ ସନ୍ୟାସୀ, ପ୍ରଥମ ଶ୍ରେଣୀର ଜ୍ଞାନୀ । ସକଳ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ସମ୍ପୂର୍ଣ୍ଣ ନିର୍ଲିପ୍ତ ଥିବା ଯୋଗୀ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ ।

**ଚତୁର୍ଥ ଅଧ୍ୟାୟ**—ତୃଷ୍ଣାର ନିୟନ୍ତ୍ରଣହିଁ ଜୀବନର ଲକ୍ଷ୍ୟ ।

**ପଞ୍ଚମ ଅଧ୍ୟାୟ**—ଇତିହାସର ପୁନରାବୃତ୍ତି । ସମାଜର ଚାରୋଟି ଅବସ୍ଥା— ଶୈଶବ, ଯୌବନ, ପ୍ରୌଢତ୍ୱ ଏବଂ ପରିପକ୍ୱ ଅବସ୍ଥା ।

**ଷଷ୍ଠ ଅଧ୍ୟାୟ**—କୃଷି ସମାଜର ଅଭ୍ୟୁଦୟ ।

**୭ମ ଅଧ୍ୟାୟ**—କ୍ଷମତା ତୃଷ୍ଣା ଓ ସଞ୍ଚୟ ତୃଷ୍ଣା ମଧ୍ୟରେ ପ୍ରାଣ ମୂର୍ଚ୍ଛା ଲଢାଇ ।

**୮ମ ଅଧ୍ୟାୟ**— ଆତ୍ମ ଜ୍ଞାନର ଯୁଗ ଖ୍ରୀ: ପୂ: ୬୦୦ରୁ ଖ୍ରୀଷ୍ଟାବ୍ଦ ୬୦୦

**ନବମ ଅଧ୍ୟାୟ**—ଧର୍ମାନ୍ଧତାର ଯୁଗ ଖ୍ରୀଷ୍ଟାବ୍ଦ ୬୦୦ରୁ ଖ୍ରୀଷ୍ଟାବ୍ଦ ୧୫୦୦ ।

**୧୦ମ ଅଧ୍ୟାୟ**— ନରମେଧ ଯଜ୍ଞ ଦ୍ୱୟର କାରଣ ଓ ଫଳାଫଳ ।

**ଏକାଦଶ ଅଧ୍ୟାୟ**—ଅନୁସନ୍ଧିତ୍ସା ଯୁଗର ପୁନରବୃତ୍ତିର ଶୁଭ ଲଗ୍ନ— ଖ୍ରୀଷ୍ଟାବ୍ଦ ୧୯୫୦ ।

**ଦ୍ୱାଦଶ ଅଧ୍ୟାୟ**—ଉପସଂହାର । ଭାବୀ ବିଶ୍ୱରାଷ୍ଟ୍ର ସଂଘ ଓ ସର୍ବୋଦୟ ସମାଜର ରୂପରେଖ ।



# ପ୍ରଥମ ଅଧ୍ୟାୟ

## ଗ୍ରାମରାଜ୍ୟର ଚିତ୍ର

'ଅଯୋଧ୍ୟା' ଶବ୍ଦର ଏକ ତାତ୍ତ୍ୱିକ ଅର୍ଥ ମୋର ମନକୁ ଆସି ଆସି ଯାଉଛି । ପୌରାଣିକ ରୂପକ ଓ ଆଖ୍ୟାୟିକାମାନଙ୍କର ଗୋଟିଏ ଗୋଟିଏ ସ୍ଥୂଳ ଅର୍ଥ ଏବଂ ସୂକ୍ଷ୍ମ ଅର୍ଥ ରହିବା ପରି 'ଅଯୋଧ୍ୟା' ଶବ୍ଦର ସ୍ଥୂଳ ଅର୍ଥ ସାଙ୍ଗକୁ ଏକ ସୂକ୍ଷ୍ମ ଅର୍ଥ ବି ରହିଛି । ନ+ଯୋଧ୍ୟା = ଅଯୋଧ୍ୟା । ଗ୍ରାମଗୁଡ଼ିକ ଯୁଦ୍ଧ, ସଂଘର୍ଷ ବା ଦଳାଦଳିରୁ ଊର୍ଦ୍ଧ୍ୱରେ ରହିବା ଦ୍ୱାରା ହିଁ ଗୋଟିଏ ଗୋଟିଏ ଅଯୋଧ୍ୟା ବୋଲାନ୍ତି ଏବଂ ଏହି ଦଳମୁକ୍ତ ଗ୍ରାମରେହିଁ ମାନବ ହୃଦୟରେ ଆତ୍ମା ରାମଙ୍କର ପ୍ରକାଶ ହୁଏ । ଏହି ଦୃଷ୍ଟିରୁ ବିଚାରିଲେ ଗ୍ରାମଗୁଡ଼ିକ ରାଜନୈତିକ ଦଳାଦଳି ବା ଅନ୍ୟ ସକଳ ପ୍ରକାର ବାଦବିସମ୍ବାଦରୁ ବଞ୍ଚି ଶାସକଙ୍କର ସୁବ୍ୟବସ୍ଥା ଦ୍ୱାରା ମୁକ୍ତ ରହିବା ବିଧେୟ । ଏହିପରି ଦଳାଦଳିରୁ ଓ ଶୋଷଣରୁ ମୁକ୍ତ ସ୍ୱାବଲମ୍ବୀ ସ୍ୱୟଂଶାସିତ ଗ୍ରାମହିଁ ଅଯୋଧ୍ୟା, ରାମରାଜ୍ୟ ବା ଗ୍ରାମରାଜ୍ୟ ବୋଲାଏ ।

ସମାଜର ଏକ ସନ୍ଧି ହିଁ ସ୍ତମ୍ଭ ଅଟେ । ସମାଜର ମୂଳଭିତ୍ତି ଯଦି ଆଧ୍ୟାତ୍ମିକତା ଉପରେ ପର୍ଯ୍ୟବସିତ ହୁଏ, ତେବେ ତାହାର ସମ୍ପ୍ରୀତି ସଂବର୍ଦ୍ଧିତ ହୁଏ, ଏବଂ ଏହି ସଂବର୍ଦ୍ଧିତ ରାଷ୍ଟ୍ର ସମୂହର ସମାଧିତାରେ ସମାଜର ପ୍ରତ୍ୟେକ ଗ୍ରାମ ଅନ୍ନ, ବସ୍ତ୍ର, ଶିକ୍ଷା, ସ୍ୱାସ୍ଥ୍ୟ, ଆଦିରେ ସ୍ୱାବଲମ୍ବୀ ହୁଏ । ମହାତ୍ମାଜୀ ଓ ବିନୋବାଜୀଙ୍କ ପରିକଳ୍ପିତ ସର୍ବୋଦୟ ସମାଜରେ ସାରା ଭାରତ ତଥା ସମଗ୍ର ପୃଥିବୀରେ ପ୍ରତ୍ୟେକ ଗ୍ରାମ ଅନୁବନ୍ଧାଦିରେ ସ୍ୱାବଲମ୍ବୀ ଗୋଟିଏ ଗୋଟିଏ ଶୋଷଣମୁକ୍ତ ପଞ୍ଚାୟତରାଜ ପାଲଟିବ । ଏହି ଗ୍ରାମରାଜ୍ୟମାନଙ୍କର ପରିପୋଷଣ, ସଂବର୍ଦ୍ଧନ ଏବଂ ପରସ୍ପର ମଧ୍ୟରେ ଆଦାନପ୍ରଦାନ ସହାୟକ ରୂପ ଭାବରେ ଗୋଟିଏ ମାତ୍ର ବିଶ୍ୱସଂସ୍ଥା ରହିବ, ଯାହାର ଶାଖାମାନ ପୃଥିବୀର ପ୍ରତ୍ୟେକ ଦେଶରେ ଏବଂ ତାର ପ୍ରଦେଶମାନଙ୍କରେ ସ୍ଥାପିତ ହେବ । ଏହି ରାଷ୍ଟ୍ରସଂସ୍ଥା ଓ ତାର ଶାଖାମାନେ ବର୍ତ୍ତମାନର ଭିନ୍ନ ଭିନ୍ନ ଦେଶରେ ସରକାରଙ୍କ ପରି ଜନ ଜୀବନକୁ ସବୁକ୍ଷେତ୍ରରେ ନିୟନ୍ତ୍ରିତ ଓ ପରିଚାଳିତ କରିବାକୁ ନିଷ୍ଫଳ ପ୍ରୟତ୍ନ ନ କରି ଉକ୍ତ ଗ୍ରାମସ୍ୱରାଜ୍ୟଗୁଡ଼ିକର ତଟସ୍ଥ ପୃଷ୍ଠପୋଷକ ହୋଇ ରହିବେ ।

ସାରା ପୃଥିବୀରେ ଗୋଟିଏ ମାତ୍ର ରାଷ୍ଟ୍ରସଂସ୍ଥା ପ୍ରତିଷ୍ଠିତ ହେବା ପୂର୍ବରୁ ଭାରତର ପାଞ୍ଚଲକ୍ଷ ଗ୍ରାମରେ ପାଞ୍ଚଲକ୍ଷ ସ୍ୱାବଲମ୍ବୀ ଗ୍ରାମରାଜ୍ୟ ଯଦି ପ୍ରତିଷ୍ଠିତ ହୋଇଯିବ ତା, କେନ୍ଦ୍ର ଓ ରାଜ୍ୟ ସରକାରଙ୍କର କାମଗୁଡ଼ିକ ଯେ ହାଲୁକା ହୋଇଯିବ, କେବଳ ତାହା ନୁହେଁ, ସାରା ଜଗତକୁ ଭାରତର ଏହା ଏକ ମହତ୍ ଅବଦାନ ହେବ ।

ଶିଶୁ ଯଦି ଚଳିବାରେ କଚଡ଼ା ନ ଖାଏ, ଶିଶୁ କଚଡ଼ି ପଡ଼ିବ ବୋଲି ଆଶଙ୍କା କରି ଜନନୀ ଯଦି ତାକୁ ଚଳିବାର ସୁବିଧା ସୁଯୋଗ ନ ଦିଏ, ଶିଶୁ ଚଳି ଶିଖିବ କି ? ସୁଶାସନ ଏବଂ ସ୍ୱ-ଶାସନ ଏହି

ଦୁଇଟି ମଧ୍ୟରୁ ସ୍ୱ-ଶାସନକୁ ହିଁ ଦୋଷମୁକ୍ତ ଗଣତନ୍ତ୍ରର ମନୀଷୀ ଶାସକ ସର୍ବଦା ପସନ୍ଦ କରି ନେଇଥିବେ । ସୁ-ଶାସନ ପ୍ରତ୍ୟେକ ମଣିଷକୁ ଖାଇବା ପିନ୍ଧିବା ଅଭାବରୁ ମୁକ୍ତ ରଖିପାରେ, ମାତ୍ର ମଣିଷରେ ମଣିଷ-ପଣିଆକୁ ଫୁଟାଇ ପାରେ ନାହିଁ; ମଣିଷ ହୃଦୟରେ ଥିବା ଦେବତାକୁ ଆବାହନ କରିପାରେ ନାହିଁ । ନିଜକୁ ନିଜେ ଶାସନ କରିବାର ସୁବିଧା ସୁଯୋଗ ପାଇବା ଦ୍ୱାରା ହିଁ ମଣିଷର ଦୈହିକ, ମାନସିକ, ବୌଦ୍ଧିକ, ପ୍ରାଣିକ ଏବଂ ଆତ୍ମିକ ସକଳ କ୍ଷେତ୍ରରେ ସର୍ବାଙ୍ଗୀନ ବିକାଶ ଘଟିପାରେ । ଏହାକୁ ହିଁ କୁହାଯାଏ ସର୍ବୋଦୟ । ବ୍ୟକ୍ତିର ତଥା ସମାଜର ସର୍ବୁଙ୍ଗୀଣ ଉଦୟ ବା ପ୍ରକାଶହିଁ ସର୍ବୋଦୟ ।

ଅଭାବକୁ ଆମର ଋଷି ପୂର୍ବଜମାନେ ତିନିପ୍ରକାର ବୋଲି କହିଛନ୍ତି, ଯାହାକୁ ତ୍ରିତାପ କୁହାଯାଏ । ଅନ୍ନବସ୍ତ୍ର, ଗୃହାଦିର ଅଭାବକୁ ଆଧିଭୌତିକ ଅଭାବ କୁହାଯାଏ । ଯେଉଁ ଦୁଃଖ ସନ୍ତାପ କୌଣସି ପ୍ରାକୃତିକ ବିପର୍ଯ୍ୟୟରୁ ଘଟେ, ତାହାକୁ ଆଧିଦୈବିକ ଅଭାବ କୁହାଯାଏ । ସମାଜ ମଧ୍ୟରେ ଅନୀତି, ଦୁର୍ନୀତି, ଅସତ୍ୟ, ଅନ୍ୟାୟ, ଅଧର୍ମାଦିର ପ୍ରାବଲ୍ୟ ହେଲେ, ତାହାକୁ ଆଧ୍ୟାତ୍ମିକ ଅଭାବ କୁହାଯାଏ । ସବୁ ଅଭାବ ମଧ୍ୟରେ ଆଧ୍ୟାତ୍ମିକ ଅଭାବ ଅତି ଭୟଙ୍କର । ଯେଉଁ ବ୍ୟକ୍ତିର ଆତ୍ମାର ଉପଲବ୍ଧି ଘଟିଛି, ସେ ଅନ୍ୟ ଦୁଇଟି ଅଭାବରୁ ନିଜକୁ ମୁକ୍ତ କରେ, ମାତ୍ର ଆତ୍ମାର ଆଲୋକରୁ ବଞ୍ଚିତ ମନୁଷ୍ୟ ଗାଧ ଜୀବନ ପଶୁର ସ୍ତରରେ ରହିଯାଏ । ସମାଜକୁ ସକଳ ପ୍ରକାର ଅଭାବରୁ ମୁକ୍ତ କରିବାକୁ ହେଲେ ସୁ-ଶାସନ ଅପେକ୍ଷା ସ୍ୱ-ଶାସନ ଉପରେ ହିଁ ନିର୍ଭରିତ ଗଣତନ୍ତ୍ରର ଋଷି ଶାସକମାନଙ୍କୁ ଅଧିକତର ଦୃଷ୍ଟି ଦେବାକୁ ହେବ ।

ବିନୋବାଜୀ ତାଙ୍କର ଭୂଦାନ ପଦଯାତ୍ରା ବେଳେ ଗୋଟିଏ ଭାଷଣରେ କହିଥିଲେ, "ଗାନ୍ଧିଜୀ ଗ୍ରାମସ୍ୱରାଜ୍ୟର ଯେଉଁ ପରିକଳ୍ପନା ସବୁ କରିଯାଇଛନ୍ତି, ସେ ସବୁକୁ ତାଙ୍କ ନିଜ ଦେଶର ଲୋକେ ଗ୍ରହଣ କରୁନାହାନ୍ତି । ମାତ୍ର ଚୀନ୍‌ରେ ମାଓସେତୁଙ୍ଗ ଗାନ୍ଧିଙ୍କ ଏହି ସବୁ ବ୍ୟବସ୍ଥାକୁ ବର୍ତ୍ତମାନ ବିଭିନ୍ନ ରୂପ ସାହାଯ୍ୟରେ କାର୍ଯ୍ୟକାରୀ କରାଉଛନ୍ତି ।" ଏହା କହିବାଦ୍ୱାରା ମୁଁ ମାଓଙ୍କୁ ସମର୍ଥନ କରୁନାହିଁ । ମୋର ଏହା କହିବାର ଉଦ୍ଦେଶ୍ୟ ହେଉଛି—ଭାରତର ପାଞ୍ଚଲକ୍ଷ ଗ୍ରାମକୁ ସ୍ୱୟଂନିୟନ୍ତ୍ରଣ ଦାୟିତ୍ୱ ଦେବାକୁ ସର୍ବୋଚ୍ଚ ରାଷ୍ଟ୍ରନାୟକ-ମାନଙ୍କର ଶୀଘ୍ର ଦୂରଦୃଷ୍ଟି ଆକର୍ଷଣ । ଗାନ୍ଧିଜୀଙ୍କ ଭାଷାରେ ମୁଁ ତ କହିବ ଯେ ଅହିଂସାବ୍ରତୀଙ୍କ ବିନା ନିର୍ଦ୍ଦେଶରେ ଗୋଟିଏ ଦୁବପତ୍ର ବି କଅଁଳେ ନାହିଁ । ଭାରତରେ ତଥା ସମଗ୍ର ଜଗତରେ ଯାହାକିଛି ହେଉଛି, ତାହା କେବଳ ସେହି ବିଶ୍ୱନିୟନ୍ତା ମଙ୍ଗଳମୟଙ୍କ ନିର୍ଦ୍ଦେଶରେ ହିଁ ଘଟିଯାଉଛି । ମୋର ଦୃଢ଼ ଧାରଣା ଯେ ଗ୍ରାମ-ସ୍ୱରାଜ୍ୟର ଦୃଢ଼ ଭିତ୍ତି ସ୍ଥାପିତ, ଆର୍ଯ୍ୟ ଯୁଗରୁ ଏ ଦେଶରେ ରହିଛି ଏବଂ ଏହି ଭିତ୍ତି ଭୂମି ଉପରେ ବିନୋବାଜୀଙ୍କର ଅଭୂତପୂର୍ବ ଭୂଦାନ ଗ୍ରାମଦାନର କୋଣାର୍କ ଦେଉଳଟି ଠିଆ ହୋଇଯାଇଛି । ଦେଉଳର ମୁଣ୍ଡି ମଣ୍ଡ କାମଟି ଇନ୍ଦିରାଜୀଙ୍କର ବିଚକ୍ଷଣ ପଦକ୍ଷେପଦ୍ୱାରା ସମ୍ପାଦିତ ହୋଇଯିବାକୁ ବାକି ରହିଛି । ଚନ୍ଦ୍ରଲୋକକୁ ମଣିଷ ଯିବାଟାକୁ ଏକ ଅଦ୍ଭୁତ ସାର୍କସ ଖେଳ ସହିତ ତୁଳନା କରାଯାଇପାରେ । ମନୁଷ୍ୟ ପକ୍ଷରେ ଦେବତ୍ୱ ଅର୍ଜନ କରିବାଟି ଯେତିକି ବିସ୍ମୟକର, ଚନ୍ଦ୍ରଲୋକକୁ ମଣିଷ ଯିବାରେ ମୁଁ ସେତିକି ବିସ୍ମୟ ଅନୁଭବ କରୁନ । ମୋର ତ କିପରି ମନେ ହେଉଛି ଯେ ମଣିଷ ପକ୍ଷରେ ଦେବତା ହେବାର ବିସ୍ମୟକର କାମଟି ଏହି ଭାରତରେ ହିଁ ପ୍ରଥମେ ଆରମ୍ଭ ହେବ, ଯାହାକି ଆମେରିକା ଓ ରୁଷିଆର ଚନ୍ଦ୍ରଅଭିଯାନ ବିସ୍ମୟକୁ ଫିକା କରିଦେବ ।

ଯୋଗୀ ଅରବିନ୍ଦ ଏବଂ ଶ୍ରୀମା'ଙ୍କ ଭବିଷ୍ୟତ ବାଣୀ ସଫଳ ହେଉ । ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ସାରା ଜଗତକୁ ଆଲୋକର ବାଟ ଦେଖାଉ । ବିନୋବାଜୀଙ୍କ 'ଜୟଜଗତ' ବାଣୀ ରୂପାୟିତ ହେଉ । ତାଙ୍କର ଅନୁଶାସନ ପର୍ବର ଗଭୀର ତତ୍ତ୍ୱକୁ ଭାରତର ଶାସକ ଓ ଶାସିତ ଉଭୟେ ହୃଦୟଙ୍ଗମ କରି ନିଜନିଜର ଆତ୍ମସମୀକ୍ଷା ଓ ଆତ୍ମଶୁଦ୍ଧି କରନ୍ତୁ ଏବଂ ସ୍ୱୟଂଶାସନର ପଥରେ ଅଗ୍ରସର ହେଉନ୍ତୁ । ଇନ୍ଦିରାଜୀଙ୍କ ପ୍ରତ୍ୟେକଟି ପଦକ୍ଷେପରେ ଦେବତାମାନଙ୍କର ପୁଷ୍ପବୃଷ୍ଟି ହେଉ ଏବଂ ତାଙ୍କର ସେହି ପଦକ୍ଷେପମାନ ଗାନ୍ଧି ବିନୋବାଙ୍କ ନିର୍ଦ୍ଦେଶିତ ଗ୍ରାମ ସ୍ୱରାଜ୍ୟ ଆଡ଼କୁ ହିଁ ମୁହାଁଉ ।

ଇନ୍ଦିରାଜୀଙ୍କ ଜରୁରୀ ପରିସ୍ଥିତି ଘୋଷଣାର ପଦକ୍ଷେପକୁ ଆଚାର୍ଯ୍ୟ ବାବେ ଅନୁଶାସନ ପର୍ବ ନାମ ଦେଇଥିଲେ । ମୁଁ ତ ଏହି ପଦକ୍ଷେପକୁ ସମୁଦ୍ର ମନ୍ଥନ ସଙ୍ଗେ ତୁଳନା କରି ଏହାକୁ ବିଗ୍ରହମନ୍ଥନ ପର୍ବ ବୋଲି କହିବି । ଦେବତା ଓ ଅସୁରମାନେ ପରସ୍ପର ସଂଘର୍ଷ କରି ସୃଷ୍ଟିକି ଧ୍ୱଂସ କରିବାକୁ ବାହାରିବାରୁ ଭଗବାନ ବିଷ୍ଣୁ ଏପରି ଏକ ପଦକ୍ଷେପ ନେଲେ ଯହିଁରେ କି ଦେବତା, ଅସୁରମାନେ ସଂଘର୍ଷର ବାଟ ଛାଡ଼ି-ଦେଇ ପରସ୍ପର ସହଯୋଗରେ ବିଗ୍ରହମନ୍ଥନର ବାଟଟିକୁ ଗ୍ରହଣ କରିଗଲେ । ପୌରାଣିକ ସମୁଦ୍ର ମନ୍ଥନ ଆଖ୍ୟାୟିକାର ତାତ୍ପର୍ଯ୍ୟ ହେଉଛି—ପରସ୍ପର ବିଗ୍ରହ ବାଣ୍ଟ ଓ ବିଗ୍ରହ ସଂଘର୍ଷର ନିରର୍ଥକ ପନ୍ଥାକୁ ନ ଧରି, ପରସ୍ପରକୁ କାମୁଡ଼ି ନ ଫିଙ୍ଗି, ପରସ୍ପରର ଚରିତ୍ର ସଂହାର ନ କରି ବିଗ୍ରହ ମନ୍ଥନର ମାର୍ଗ ଧରିବା । ପରସ୍ପରର ଦୋଷ-ଦର୍ଶୀ ନ ହୋଇ ପରସ୍ପରର ଗୁଣ ଦର୍ଶନରେ ହିଁ ମଣିଷପଣିଆର ବିକାଶ ଘଟେ । ଅନ୍ୟକୁ ଆଗ ନ ଶୋଧି, ନିଜକୁ ଆଗ ଶୋଧିନେବା ହିଁ ବଡ଼ କଥା । ଠିକ୍ଏ କଥାରେ ବାଦ, ଧାରଣା, ସେବାକୁ, ଅନଶ

କହିବା ସତ୍ୟାଗ୍ରହ ନୁହେଁ ବରଂ ଦୁରାଗ୍ରହ ଅଟେ । କର୍ତ୍ତବ୍ୟ ପାଳନ ଓ ଦାୟିତ୍ୱବୋଧରୁ ହିଁ ଅଧିକାର ଶକ୍ତି ଓ ଦାବୀପଣିଆ ଆସିଯାଏ । ଗତ ୨୫ ବର୍ଷ ହେଲା ପ୍ରତିଦିନ ଧର୍ମଘଟ, ଧାରଣା, ଶୋଭାଯାତ୍ରା, ବନ୍ଦ, ଅନଶନ ପ୍ରଭୃତି ଦେଖି ଦେଖି ମନରେ ଭାବୁଥାଏଁ, ଭାରତର ଗଣତନ୍ତ୍ରର ଗତି କୁଆଡ଼େ ? ଯେଉଁ ବିଲାତରୁ ଗଣତନ୍ତ୍ରର ଆମଦାନି, ସେଠି ତ କାହିଁ ଏ ସୁଆଙ୍ଗ ନାହିଁ ! ନିଆଁରେ ପାଣି ପକାଇବା ପରି ଇନ୍ଦିରାଙ୍କ ଜରୁରୀ ପରିସ୍ଥିତି ପାଲଟିଲା ଏବଂ ଯେଉଁସବୁ ସୁଆଙ୍ଗ ଦେଖି ଭାରତ ବାହାରେ ଲୋକେ ନାକରେ କୁଠା ଝୋଞ୍ଚି ହସୁଥିଲେ, ସେହି ଦୁରାଗ୍ରହ ସୁଆଙ୍ଗଗୁଡ଼ିକ ଚିରଦିନ ପାଇଁ ଭାରତରୁ ବିଦାୟ ନେଲେ । ଭାରତ ଏବେ ଏକ ନୂଆ ଦିଗନ୍ତରେ ପହଞ୍ଚିଗଲା ।

ଗାଁମାନଙ୍କରେ ଜମିଜମା ସବୁ କାହାରି ଆଉ ବ୍ୟକ୍ତିଗତ ହୋଇ ନ ରହୁ । ସେ ସବୁ ସ୍ୱତ୍ୱାପନ୍ନ ନ ହୋଇ ଗାଆଁ ସଭା ହାତରେ ରହୁ । ଗାଆଁରେ ଘରେ ଘରେ ଆବାଳବୃଦ୍ଧବନିତା ସମସ୍ତେ ନିଜ ନିଜ ଅବସର ବେଳେ ସୂତା କାଟି ନିଜର ପୋଷାକ ପରିଚ୍ଛଦରେ ସ୍ୱାବଲମ୍ବୀ ହୁଅନ୍ତୁ । ଗ୍ରାମେ ଗ୍ରାମେ ହାତତନ୍ତ ପ୍ରତିଷ୍ଠା ହେଉ । ଭାରତ ସ୍ୱାଧୀନତା ପାଇବା ପରେ ପରେ ଗାନ୍ଧିଜୀ ନେହରୁ ସରକାରଙ୍କୁ ସୂଚନା ଦେଇଥିଲେ, କେନ୍ଦ୍ର ଓ ପ୍ରାଦେଶିକ ସରକାରମାନେ ସହରମାନଙ୍କରେ ନୂଆ ନୂଆ ଲୁଗାକଳ ପ୍ରତିଷ୍ଠାକୁ ପ୍ରୋତ୍ସାହନ ନ କରି ବରଂ ନିର୍ଦ୍ଦିଷ୍ଟ କେତୋଟି ବର୍ଷ ମଧ୍ୟରେ ଭାରତରୁ ସବୁ ଲୁଗାକଳ ଉଠାଇ ଦିଆଯିବ ବୋଲି ଏକ ଅଧ୍ୟାଦେଶ ଜାରି କରି ଗ୍ରାମବାସୀଙ୍କୁ ତଥା ସହରବାସୀ ଲୋକଙ୍କୁ ବସ୍ତ୍ରସ୍ୱାବଲମ୍ବୀ ହେବାକୁ ଚେତାବନୀ ଦିଅନ୍ତୁ । ଗାନ୍ଧିଜୀଙ୍କ କଥା ଶୁଣିଥିଲେ ଭାରତର ସ୍ଥିତି ଆଜି ଅନ୍ୟ ପ୍ରକାର ହୋଇଥାନ୍ତା । ମନ୍ତ୍ରୀମାନେ ଯେ ବର୍ଷଭିତରେ ଚାରି ପାଞ୍ଚ ମାସ ବିଦେଶ

ବସ୍ତୁବନ୍ତି, ତାହା ଆଉ ନ ଥାନ୍ତା ।

ଯେପରି ଏକ ଅବ୍ୟକ୍ତ, ଆକାରହୀନ ଓ ଅଦୃଶ୍ୟ ବିଦ୍ୟୁତ୍‌ଶକ୍ତି ଆଲୋକ ରୂପରେ, ବିଜୁଳି ପଙ୍ଖାରୁ ପବନ ଆକାରରେ, ଟେଲିଭିଜନରୁ ଶବ୍ଦତରଙ୍ଗ ଓ ଦୃଶ୍ୟ ଆକାରରେ ପ୍ରକାଶିତ ହୁଏ, ଯେପରି ଏକ ବିଦ୍ୟୁତ୍ ଶକ୍ତି ମାଟି, ପାଣି, ପବନ, ଉତ୍ତାପ, ଆଲୋକ, ଆକାଶ ରୂପେ ସର୍ବତ୍ର ବିଦ୍ୟମାନ, ସେହିପରି ଏକ ଅଦ୍ୱିତୀୟ ସଚ୍ଚିଦାନନ୍ଦ ହିଁ ଏହି ପରିଦୃଶ୍ୟମାନ ଜଗତ ଆକାରରେ ପ୍ରକାଶିତ । ଯେପରି ସୁନାର ହାର, ସୁନାର କୁଣ୍ଡଳ ଓ ସୁନାର ଚୁଡ଼ି ବିଭିନ୍ନ ରୂପରେ ପ୍ରତିଭାତ ହେଲେ ବି ଏ ସବୁ ବସ୍ତୁ ସୁନା ଛଡ଼ା ଆଉ କିଛି ନୁହେଁ, ସେହିପରି ଏକ ଆତ୍ମା ବା ସଚ୍ଚିଦାନନ୍ଦ ହିଁ ବିଶ୍ୱରୂପ ଧରି ଲୀଳା କରିଯାଉଛନ୍ତି । ଏହି ଆତ୍ମାଙ୍କୁ ଯେ ଉପଲବ୍ଧି କରେ, ସେ ଆତ୍ମସ୍ୱରୂପ ହିଁ ହୋଇଯାଏ । ଶ୍ରୀରାମ, ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁ, ମହମ୍ମଦ, କବୀର, ନାନକ, ଶଙ୍କର, ଲାଓସି, ପ୍ଲାଟୋ, ଚୈତନ୍ୟ, ରାମକୃଷ୍ଣ, ମହାତ୍ମାଜୀ, ବିନୋବାଜୀ, ରମଣ ମହର୍ଷି, ଶ୍ରୀମା, ଶ୍ରୀଅରବିନ୍ଦ, ନିଗମାନନ୍ଦ, ଅନୁକୂଳଚନ୍ଦ୍ର, ସତ୍ୟସାଇ ବାବା, ମହିମା ଗୋସାଇଁ, ଅଭିରାମ, ଭୀମ ଭୋଇ, ଦାସିଆ ବାଉରି ପ୍ରଭୃତି ଏହି ଶ୍ରେଣୀର ମହାତ୍ମା ଅଟନ୍ତି, ଯେଉଁମାନେ ସର୍ବବ୍ୟାପୀ ଆତ୍ମାକୁ ଉପଲବ୍ଧି କରି ଆତ୍ମସ୍ୱରୂପ ହୋଇଛନ୍ତି । ନବୀନ ସାଧକମାନେ ଏହିମାନଙ୍କ ବାଣୀକୁ ଶ୍ରଦ୍ଧାରେ ପାଳିବା ଦ୍ୱାରା ହିଁ ଅସାଧ୍ୟ ସାଧନ କରି-ପାରନ୍ତି ।

# ତୃତୀୟ ଅଧ୍ୟାୟ

## ବାଲ୍ମୀକିଙ୍କ ରାମରାଜ୍ୟ ପରିକଳ୍ପନା

ରାମରାଜ୍ୟ ଓ ରାବଣରାଜ୍ୟ ଏ ଦୁଇ ପରସ୍ପରବିରୋଧୀ ଶାସନତନ୍ତ୍ରକୁ ଚିତ୍ର କରିବାକୁ ଯାଇ ବାଲ୍ମୀକି ଏପରି କେତେଗୁଡ଼ିଏ ମୌଳିକ ଭାବର ପରିବେଷଣ କରିଛନ୍ତି, ଯାହାକି ସାର୍ବଜନୀନ ଭାବରେ ଦେଶ କାଳ ପାତ୍ର ନିର୍ବିଶେଷରେ ପ୍ରଯୋଜ୍ୟ ହୋଇପାରେ। ଏହା ପୁରୁଷାନୁକ୍ରମିକ ରାଜା, ନିର୍ବାଚିତ ମନ୍ତ୍ରିମଣ୍ଡଳ କିମ୍ବା ଏକଚ୍ଛତ୍ର ଶାସକ ଏହି ସମସ୍ତଙ୍କ ପ୍ରତି ପ୍ରଯୁକ୍ତ ହୋଇପାରେ। ଚୀନ୍‌ର ଏକଚ୍ଛତ୍ର ଶାସକ ଏବଂ ଭାରତର ନିର୍ବାଚିତ ପ୍ରଧାନ ମନ୍ତ୍ରୀ କିମ୍ବା ଆମେରିକାର ପ୍ରେସିଡେଣ୍ଟ ଶ୍ରୀରାମଚନ୍ଦ୍ରଙ୍କ ବାଟରେ ବା ରାବଣର ବାଟରେ ଯାଇପାରନ୍ତି। ଏମାନେ ରାବଣ ବା ଫାସିଷ୍ଟ ସାଜିପାରନ୍ତି, କିମ୍ବା ସଂଯତ ଅନାସକ୍ତ ରାମଚନ୍ଦ୍ର ବି ପାଲଟି ପାରନ୍ତି। ବାଦସାହା ଆକବର ରାମଙ୍କ ବାଟରେ ଯାଇଛନ୍ତି, ମାତ୍ର ବାଦସାହା ଆଉରଙ୍ଗଜେବ ରାବଣର ବାଟ ଧରି ମୋଗଲ ସାମ୍ରାଜ୍ୟର ପତନ ଘଟାଇଲେ। ରାମରାଜ ଓ ରାବଣରାଜ ଏ ଦୁଇଟିଯାକ ସନାତନ ଶାସନତନ୍ତ୍ର ଯେଉଁଠି ସୁଶାସନ ଉପରେ କିମ୍ବା କଠୋର ଶୃଙ୍ଖଳ ଯୁକ୍ତ ଶାସନ ଉପରେ କେବଳ ଦୃଷ୍ଟି ଦିଆଯାଏ ମାତ୍ର ଯେଉଁଠି ଶାସକ ନିଜକୁ ସଂଯତ କରିବାରେ ତଥା

ପ୍ରଜାଙ୍କର ଅନୁଶାସନ ଉପରେ ଜମାହିଁ ଦୃଷ୍ଟି ଦିଅନ୍ତି ନାହିଁ, ସେହି ପ୍ରକାର ଶାସନ ହିଁ ରାବଣରାଜ୍ୟର ନମୁନା ଅଟେ। ଯେଉଁଠି ଶାସକମାନେ ନିଜର ଆତ୍ମଶୁଦ୍ଧି ତଥା ଲୋକଙ୍କର ସ୍ୱ-ଶାସନ ଉପରେ ବେଶୀ ଦୃଷ୍ଟି ଦିଅନ୍ତି, ଅଥଚ ପ୍ରଜାଙ୍କର ସ୍ୱାଧୀନତା ଓ ଶାସନ ଦେଇ ଧ୍ୱଂସକାରୀ ସ୍ୱେଚ୍ଛାଚାରରେ ପରିଣତ ନ ହୁଏ, ସେଥିକି ସଦା ସଚେତ ରୁହନ୍ତି, ତାହାହିଁ ରାମରାଜ୍ୟ ବା ଗ୍ରାମସ୍ୱରାଜ୍ୟର ନମୁନା ସ୍ୱରୂପ ହୁଏ।

୧—ବୈରାଗ୍ୟ ଓ ବୈରାଜ୍ୟ ଏ ଦୋହେଁ ଏକାର୍ଥବୋଧକ ଶବ୍ଦ ଅଟନ୍ତି। ସକଳ ପ୍ରକାର ପରିଗ୍ରହରୁ ଯେ ମୁକ୍ତ, ସର୍ବବିଧ ଶୃଙ୍ଖଳରୁ ଯେ ମୁକ୍ତ ହୋଇ ନିର୍ଦ୍ୱନ୍ଦ୍ୱ ସ୍ଥିରପ୍ରଜ୍ଞ ଜୀବନ ଯାପନ କରୁଛନ୍ତି, ସେହି ସନ୍ନ୍ୟାସୀ ବୈରାଗ୍ୟ ବା ବୈରାଜ୍ୟର ଏକ ପ୍ରାନ୍ତରେ ଥାନ୍ତି। ପୁଣି ସର୍ବବିଧ ଭୋଗ, ଐଶ୍ୱର୍ଯ୍ୟ ବା କ୍ଷମତା ସମ୍ପଦ ମଧ୍ୟରେ ରହି ବି ଯେଉଁ ଜ୍ଞାନୀ ସମ୍ପୂର୍ଣ୍ଣ ଅନାସକ୍ତ, ଆତ୍ମସ୍ଥ ଏବଂ ନିର୍ଦ୍ୱନ୍ଦ୍ୱ ରହିଥାନ୍ତି, ସେହି ହେଉଛନ୍ତି ପ୍ରକୃତ ଯୋଗୀ ଏବଂ ସେ ବୈରାଗ୍ୟର ଅନ୍ୟ ଏକ ପ୍ରାନ୍ତରେ ଅବସ୍ଥାନ କରନ୍ତି। ରାମଚନ୍ଦ୍ର ଆତ୍ମସ୍ଥ ଯୋଗୀ, ମାନ ବଶିଷ୍ଠ, ବଶିଷ୍ଠ ଏ ଦୁହେଁ ଆତ୍ମସ୍ଥ ସନ୍ନ୍ୟାସୀ।

ରାମରାଜ୍ୟର ପରିକଳ୍ପନାରେ ଅବକାଶ ଏକ ଉଚ୍ଚକୋଟିର ବୈରାଗ୍ୟର ଚିତ୍ର ଫୁଟାଇଛନ୍ତି। ଶାସକମାନେ ଶାସନ କ୍ଷମତାକୁ ପ୍ରଜାଙ୍କ ଉପରେ ଜାରି କରିବାକୁ ଧୀରେ ଧୀରେ ସଙ୍କୁଚିତ କରିନେଇ ନିଜର ଆତ୍ମଶାସନ ଏବଂ ଆତ୍ମଶୁଦ୍ଧି ଦ୍ୱାରା, ନିଜକୁ ଯେତିକି ଯେତିକି ନିରହଙ୍କାର ଓ ଅନାସକ୍ତପୂର୍ଣ୍ଣ ଯୋଗୀର ସ୍ତରକୁ ଉଠାଇପାରନ୍ତି ଏବଂ ସ୍ଥିରପ୍ରଜ୍ଞ ସର୍ବତ୍ୟାଗୀ ସନ୍ନ୍ୟାସୀଙ୍କ ସହିତ ସେତିକି ଯୋଗସୂତ୍ର ରଚିବାରେ ସଫଳତା ଅର୍ଜନ କରନ୍ତି, ଦଣ୍ଡଦାତା ଶାସକର ସତ୍ତା ତଥା

ଶୋଷକ ଶୋଷିତ ମଧ୍ୟରେ ଥିବା ପ୍ରଦତ୍ତ-କଏଦର ଭେଦସମ୍ପର୍କ ସେତିକି [illegible] ଦ୍ରଷ୍ଟା ଗୁରୁ ଓ ଜିଜ୍ଞାସୁ ଶିଷ୍ୟର ରୂପାନ୍ତରିତ ସମ୍ପର୍କ ଶାସକ ଏବଂ ଶାସିତଙ୍କ ମଧ୍ୟରେ ପ୍ରତିଷ୍ଠିତ ହୁଏ । ଋଷି କାର୍ଲମାର୍କସଙ୍କର ରାଷ୍ଟ୍ରସଂସ୍ଥାର ଅସ୍ତିତ୍ୱର ଅପନୋଦନ କେବଳ ଏହି ବାଟରେ ହିଁ ସମ୍ଭବ ହୁଏ । ନାନ୍ୟପନ୍ଥା ବିଦ୍ୟତେ ଅୟନାୟ 'ଉପନିଷଦ ଅର୍ଥାତ୍ ସମାଜକୁ ସତ୍ୟଶିବସୁନ୍ଦର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ କରିବାର ଅନ୍ୟ ପନ୍ଥା ନାହିଁ ।

ସମାଜକୁ ରାଷ୍ଟ୍ରସଂସ୍ଥାର ଶୃଙ୍ଖଳରୁ ମୁକ୍ତ କରିବାର ଅର୍ଥ ନୁହେଁ ଯେ ରାଷ୍ଟ୍ରଯନ୍ତ୍ର ବା ସରକାର ରହିବ ନାହିଁ, ପରନ୍ତୁ ଅନାସକ୍ତ ଶାସକ-ରୂପୀ ଯୋଗୀ ଏବଂ ସର୍ବତ୍ୟାଗୀ ସନ୍ନ୍ୟାସୀର ସମ୍ମିଳିତ ପ୍ରଚେଷ୍ଟାରେ ସମାଜର ଜନସାଧାରଣ ନିଜକୁ ଏପରି ସଂଯତ ଓ ଶୃଙ୍ଖଳିତ କରିନେବେ ଯେ ସେମାନଙ୍କର ସରକାର ଉପରେ ନିର୍ଭରଶୀଳତା ଏକାବେଳକେ ଲୁପ୍ତପ୍ରାୟ ହୋଇଯାଇଥିବ । ଶାସନମୁକ୍ତ ଓ ଶୋଷଣମୁକ୍ତ ତତ୍ତ୍ୱକୁ ମାର୍କ୍‌ସ ଯେପରି ସ୍ୱୀକାର କରିଛନ୍ତି, ଗାନ୍ଧି ଓ ବିନୋବା ମଧ୍ୟ ସେହିପରି ମାନିଛନ୍ତି ଏବଂ ଏହି ତତ୍ତ୍ୱର ଚିତ୍ରକୁ ଆଦିକବି ତାଙ୍କର ରାମଚରିତରେ ଫୁଟାଇଛନ୍ତି । ମାର୍କ୍‌ସ ଓ ଗାନ୍ଧିଙ୍କ ଭିତରେ ଫରକ ଏତିକି ଯେ ଏହି ବିଶ୍ୱବ୍ରହ୍ମାଣ୍ଡରେ ଯେ ଏକ ବିଶ୍ୱଚେତନାର ସତ୍ତା କାମ କରି ଯାଉଛନ୍ତି, ଏବଂ ଯେଉଁ ସତ୍ତାର ବିନା ନିର୍ଦ୍ଦେଶରେ ଗୋଟିଏ ତୃଣର ବି ଅଙ୍କୁରୋଦ୍‌ଗମ ହୋଇପାରେ ନାହିଁ, ଏହି ସତ୍ୟକୁ ମାର୍କସ ସ୍ୱୀକାର କରିନାହାନ୍ତି, ମାତ୍ର ଗାନ୍ଧି ଏହା ସ୍ୱୀକାର କରିଛନ୍ତି । ଏଣୁ ଲକ୍ଷ୍ୟଲାଭ ପାଇଁ ଯେ କୌଣସି ପନ୍ଥାର ଆଶ୍ରୟ ନିଆଯାଇପାରେ ବୋଲି ମାର୍କ୍‌ସଙ୍କର ମତ । ମାତ୍ର ଗାନ୍ଧିଜୀଙ୍କ ମତରେ ଲକ୍ଷ୍ୟ ଓ ଲକ୍ଷ୍ୟଲାଭର ପନ୍ଥା ମଧ୍ୟରେ

ଦୂରତ୍ୱ ବା ବ୍ୟବଧାନ ରହିଲେ ହିଁ ଲକ୍ଷ୍ୟ ଲଭ କରି ନପାରେ ହେବ-ନାହିଁ ଏବଂ ପନ୍ଥାହିଁ ଲକ୍ଷ୍ୟ ହୋଇ ବସିବ । ଏଣୁ ଯେଉଁ ବାଟରେ ଲକ୍ଷ୍ୟ ପ୍ରତିମୁହୂର୍ତ୍ତରେ ଆମ ହାତପେଠ ହେଉଥିବ, ସେହି ପନ୍ଥାକୁ କେବଳ ଧରିବାକୁ ପଡ଼ିବ, ଏହାହିଁ ଗାନ୍ଧିଜୀଙ୍କ ମତ । ତାଙ୍କର ମତ ହିଁ ବେଦାନ୍ତର ମତ । ଲକ୍ଷ୍ୟ ଏବଂ ପନ୍ଥା, ସାଧ୍ୟ ଓ ସାଧନ ବେଦାନ୍ତ ମତରେ ଏକାତ୍ମ ବା ଅଭିନ୍ନ ନ ହେଲେ, ମୃଗତୃଷ୍ଣା ପଛରେ ଗୋଡ଼ାଇବାକୁ ହୁଏ ଏବଂ ଜଳର ସନ୍ଧାନ ଘଟେ ନାହିଁ ।

ମାର୍କ୍ସ ଏବଂ ଗାନ୍ଧି ବିନୋବାଙ୍କ ଭିତରେ ଏହି ଫରକ ରହିଛି ଯେ, ମାର୍କ୍ସ କହନ୍ତି କି ଶୋଷଣମୁକ୍ତ ଏବଂ ଶାସନମୁକ୍ତ ସମାଜ ପ୍ରତିଷ୍ଠା ପାଇଁ ସମାଜର ସବୁ ସମ୍ପଦକୁ ସେତେବେଳେ ଜନତା ସାଧାରଣରେ ରାଷ୍ଟ୍ରାୟତ୍ତ କରିବାକୁ ପଡ଼ିବ; ବଜାରର ଅର୍ଥନୀତି ବ୍ୟକ୍ତି ନିୟନ୍ତ୍ରିତ ନ ହୋଇ ରାଷ୍ଟ୍ରନିୟନ୍ତ୍ରିତ ହେବ, ଇତ୍ୟାଦି । ମାର୍କ୍ସଙ୍କ ଏହି ସିଦ୍ଧାନ୍ତକୁ ରୁଷିଆ ୫୦-୬୦ ବର୍ଷ ହେଲା ପ୍ରୟୋଗ କଲାଣି; ମାତ୍ର ଏହି ପ୍ରୟୋଗ ଦ୍ୱାରା ପ୍ରମାଣିତ ହେଲାଣି ଯେ ରାଷ୍ଟ୍ରଯନ୍ତ୍ରର ସର୍ବବ୍ୟାପୀ କ୍ଷମତା ଧୀରେ ଧୀରେ କମିଯିବା ଦୂରେ ଥାଉ ବରଂ ବଢ଼ିବାରେ ଲାଗିଛି ।

ଗାନ୍ଧି ବିନୋବାଙ୍କ ମତରେ ଗାଁ ଜମି ଉପରୁ ବ୍ୟକ୍ତିଗତ ମାଲିକାନା ଲୋପ କରାଯାଇ, ଗାଁ ସଭା ହାତରେ ଏହି ମାଲିକନାକୁ ନ୍ୟସ୍ତ କରାଯାଉ । ଏତିକିବେଳୁ ଶୋଷଣ ମୁକ୍ତି ସାଙ୍ଗକୁ ଶାସନ ମୁକ୍ତିର ଲକ୍ଷ୍ୟକୁ ବି ସାଧନ କରାଯାଉ । ରୁଷର ସବୁ ସମ୍ପତ୍ତି ରାଷ୍ଟ୍ରାୟତ୍ତ କରି ଏବଂ ବଜାର କାରବାରକୁ ସରକାରୀ ନିୟନ୍ତ୍ରଣ ରଖିବା ଦ୍ୱାରା ଏପରି ଜଟିଳତା ସେଠି ପ୍ରବେଶ କଲାଣି ଯେ, ସମାଜଟି ଶାସନମୁକ୍ତ ହେବା ଦୂରେ ଥାଉ ବରଂ ସବୁ କ୍ଷେତ୍ରର ରାଷ୍ଟ୍ରର ନିୟନ୍ତ୍ରଣ ଶକ୍ତି ବଢ଼ି ବଢ଼ି ଚାଲିଛି ।

ଋଷିଆର ପ୍ରୟୋଗରୁ ଆମର ବହୁତ କିଛି ଶିଖିବାର ଅଛି । ଏତିକି ,ବରଂ ଶୋଷଣମୁକ୍ତ ସମାଜର ରଚନା କରିବା ସାଥେ ସାଥେ ଗ୍ରାମସ୍ତରରେ ଶାସନମୁକ୍ତ ସିଦ୍ଧାନ୍ତକୁ ବି ପ୍ରୟୋଗ କରିବା ଗ୍ରହ । ମାର୍କସ ସିଦ୍ଧାନ୍ତ ପରିବର୍ତ୍ତେ ଗାନ୍ଧି ବିନୋବାଙ୍କ ବିକଳ୍ପ ସିଦ୍ଧାନ୍ତକୁ ଭାରତର ପାଞ୍ଚଲକ୍ଷ ଗ୍ରାମରେ ବୈଜ୍ଞାନିକ ଭାବରେ ପ୍ରୟୋଗ କରିବାର ବେଳ ଆସିଛି । ବିନୋବାଜୀଙ୍କ ଗ୍ରାମଦାନ ଏବଂ ଗ୍ରାମସ୍ୱରାଜ୍ୟ ବ୍ୟବସ୍ଥାକୁ ପଣ୍ଡିତ ନେହେରୁ ହାର୍ଦ୍ଦିକ ସମର୍ଥନ କରିଥିଲେ । ଇନ୍ଦିରାଜୀ ଏହାକୁ କେବଳ ସମର୍ଥନ କରିନାହାନ୍ତି, ତାଙ୍କର ୨୦ ଦଫା ଅର୍ଥନୀତି ସୂତ୍ର ତଥା ଗ୍ରାମଦାନ ଆଇନର ସଂକଳନ ଦ୍ୱାରା ସେ ବିନୋବାଜୀଙ୍କ ପରି-କଳ୍ପିତ ଶୋଷଣମୁକ୍ତ, ବର୍ଗହୀନ ଏବଂ ଶାସନମୁକ୍ତ ଗ୍ରାମସ୍ୱରାଜ୍ୟର ଭିତ୍ତି ସ୍ଥାପନ କରିଛନ୍ତି ।

୨—ଭାରତର ପାଞ୍ଚଲକ୍ଷ ଗ୍ରାମ ଯଦି ଅନ୍ନବାସ, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତିରେ ସ୍ୱାବଲମ୍ବୀ ହୋଇ [illegible] ଗୋଟିଏ ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରାମସ୍ୱରାଜ୍ୟ ବନିଯାଏ, ଏହି ପାଞ୍ଚଲକ୍ଷ ଗାଁ ଯଦି ନିଜ ନିଜର ବଜାରକୁ ନିଜେ ନିୟନ୍ତ୍ରଣ କରନ୍ତି ଏବଂ କେନ୍ଦ୍ର ତଥା ପ୍ରାଦେଶିକ ସ୍ୱସଂସ୍ଥା ଯଦି ଏହି ଗ୍ରାମସ୍ୱରାଜ୍ୟମାନଙ୍କୁ ସ୍ୱ-ଶାସନରେ ସକଳ ପ୍ରକାର ପ୍ରୋତ୍ସାହନ କରନ୍ତି ଏବଂ ତଟସ୍ଥ ମାତ୍ର ସତର୍କ ସାକ୍ଷୀ ଭାବରେ ରହି ସବୁମତେ ପୃଷ୍ଠପୋଷକ ହୁଅନ୍ତି, ଠିକ ଯେପରି ଗୁରୁ ତାର ଶିଷ୍ୟମାନଙ୍କ ମଧ୍ୟରେ ତତ୍ପରତା, ଓ ବ୍ୟକ୍ତିତ୍ୱର ପରିପ୍ରକାଶ ପାଇଁ ନାନାବିଧ କାରୁଣ୍ୟପୂର୍ଣ୍ଣ ନିର୍ଦ୍ଦେଶ, ସୂଚନା ଓ ଅନୁମୋଦନାଦି ଦେଇଥାନ୍ତି, ତେବେ ସେହି ଗ୍ରାମସ୍ୱରାଜ୍ୟ ଗୁଡ଼ିକରେ ବ୍ୟକ୍ତିବିଶେଷଙ୍କର ଭାବ ଓ ଚିନ୍ତାର ସ୍ୱାଧୀନ ଅଭିବ୍ୟକ୍ତିରେ ସଷ୍ଟର ନବପତ୍ର ବିପନ୍ନ ହେବାରେ ସଂଶୟ ଉଠି ନ ପାରେ ଏବଂ ଗାଁ ଲୋକଙ୍କର ଏ ପ୍ରକାର ସ୍ୱାଧୀନ

ଭାରତକୁ ଷଡ଼ଯନ୍ତ୍ର ଦ୍ୱାରା ବାଧା ଦେବାର ପ୍ରଶ୍ନ ହିଁ ଉଠି ନ ପାରେ । ରୁଷିଆରେ ସାରା ସମାଜକୁ ରାଷ୍ଟ୍ରାୟତ୍ତ କରାଯାଇଥିବାରୁ ସେହି ପ୍ରକାର ସମାଜରେ ପ୍ରତି ଲୋକଟିର ଚାଲିଚଳନ, ଗତିବିଧି, ଆଚରଣ ଓ କଥାବାର୍ତ୍ତା ରାଷ୍ଟ୍ରର ନଜରସ୍ଥରେ ଆସୁ ଆସୁଛି କି ନାହିଁ, ତାର ସମୀକ୍ଷା କରିବାକୁ ରାଷ୍ଟ୍ରନେତାମାନଙ୍କର ମୁଣ୍ଡ ସେଠି ସର୍ବଦା ଘୂରୁଛି । ନିଜକୁ ନିଜେ ଶାସନ କରିବାର ଦାୟିତ୍ୱକୁ ଗ୍ରାମ ଉପରେ ଛାଡ଼ି ଦେଲେ ନିଜେ ସଜାଗ, ସତର୍କ, ତଟସ୍ଥ ସାକ୍ଷୀ ଭାବରେ ରହିବା ଦ୍ୱାରା ଭାରତର ରାଷ୍ଟ୍ର-ନେତାମାନଙ୍କ ମଥାରୁ ଅନେକ ଝମେଲା କମିଯିବ ।

ଗାନ୍ଧି ବିନୋବାଙ୍କ ସିଦ୍ଧାନ୍ତ ଅନୁଯାୟୀ ଗ୍ରାମସ୍ୱରାଜ୍ୟ ବା ପଞ୍ଚାୟତ ରାଜର ସ୍ଥାପନା ହେବ ତ ଗାଆଁ ଲୋକେ ଆଉ ଭିନ୍ନ ଭିନ୍ନ ରାଜନୈତିକ ଦଳଙ୍କର ଶିକାର ହେବେନାହିଁ । ଜଙ୍ଗଲ, ଖଣି, ପରିବହନ, ଡାକତାର, ବିଦ୍ୟୁତ ଶକ୍ତି, ଓ ରାଜ୍ୟରକ୍ଷା ଆଦି କେତୋଟି ଦାୟିତ୍ୱ ସରକାରୀ ନିୟନ୍ତ୍ରଣରେ ରହିବ, ମାତ୍ର ଅନ୍ନ, ବସ୍ତ୍ର, ଗୃହ, କୃଷି, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରଭୃତି ବିଷୟ ବସ୍ତୁରେ ଗ୍ରାମଗୁଡ଼ିକୁ ସ୍ୱ-ଶାସନର ଦାୟିତ୍ୱ ଦେଇଦେବା-ଦ୍ୱାରା ହିଁ ଗ୍ରାମଗୁଡ଼ିକୁ ଯେ ବିଭିନ୍ନ ରାଜନୈତିକ ଦଳମାନ ସେମାନଙ୍କ ଯୁଦ୍ଧଭୂମି କରି ରଖିଛନ୍ତି, ସେ ସବୁ ଯୁଦ୍ଧଭୂମି ଗାଁ ମାନଙ୍କରୁ ଚାଲିଯାଇ ଦିଲ୍ଲୀ ବା ଭୁବନେଶ୍ୱରରୂପୀ ଲଙ୍କାଗଡ଼ରେ ସୀମାବଦ୍ଧ ହୋଇ ରହିବ, ଯେଉଁଠି କି ସରକାର ଏବଂ ବିରୋଧୀ ରାଜନୈତିକ ଦଳଗୁଡ଼ିକ ମଧ୍ୟରେ ତତ୍ତ୍ୱ ଓ ଆଦର୍ଶ ନେଇ ବିଚାର ମନ୍ଥନର ଯୁଦ୍ଧ ଚାଲିବ ମାତ୍ର ଭାରତର ପାଞ୍ଚଲକ୍ଷ ଗ୍ରାମ ସାମ୍ୟ, ଶାନ୍ତି, ମୈତ୍ରୀ ଓ ପ୍ରେମର ପାଞ୍ଚଲକ୍ଷ ଅଯୋଧ୍ୟା ଭାବରେ ଅବସ୍ଥାନ କରିବେ ଏବଂ ଲଙ୍କା-ଗଡ଼ ମଧ୍ୟରେ ସୀମାବଦ୍ଧ ରାମ-ରାବଣ ଲଢ଼ାଇକୁ ଦୂରରୁ ଥାଇ ଦେଖୁଥିବେ । ଏକ ଅଦ୍ୱିତୀୟ ସଚ୍ଚିଦାନନ୍ଦ ଯେ ରାମ ଓ ରାବଣ

ସାଜ ମିଛୁ ମିଛୁକା ଲଢାଇରେ ଏକ ଲୀଳା ବା ଅଭିନୟ କରୁଛନ୍ତି, ଏହା ସମ୍ୟକ୍ ଉପଲବ୍ଧି କରି ଗ୍ରାମ୍ୟ ଜନତା ଜଗତର ନିତ୍ୟ ନୂତନ ବିଚିତ୍ରତା ମଧ୍ୟରେ ଐକ୍ୟ ଖିଅଟିକୁ ଧରି ପାରିବେ।

ଶ୍ରୀରାମ ଚନ୍ଦ୍ରଙ୍କ ପ୍ରତି ଯୋଡ଼ାଏ ବ୍ୟକ୍ତିଙ୍କର କଟୁ ସମାଲୋଚନା ବିଶେଷ ତାତ୍ପର୍ଯ୍ୟ ପୂର୍ଣ୍ଣ। ଜଣେ ହେଉଛି ଗୋଟିଏ ଧୋବା ଯେ କି ରାମ ଘରଣୀ ସତୀ ସୀତାଙ୍କ ଚରିତ୍ରକୁ କଟୁ ସମାଲୋଚନା କରି ରଜାରାମଙ୍କୁ ନିଲଜ ବୋଲି କହିଥିଲା। ଅନ୍ୟ ଜଣକ ଦରିଦ୍ର ବ୍ରାହ୍ମଣ ଥିଲେ, ଏବଂ ତାଙ୍କର ତିନୋଟି ପୁତ୍ରଙ୍କର ଅକାଳ ମୃତ୍ୟୁ ଘଟିବାରୁ ସେ ରାମଙ୍କ ଶାସନକୁ ତ୍ରୁଟିପୂର୍ଣ୍ଣ ବୋଲି କହିଥିଲେ। ଧୋବା ଓ ବ୍ରାହ୍ମଣ କାହାରି ରାମଙ୍କ ରାଜଗାଦି ଅଧିକାର କରିବାର ପ୍ରଚ୍ଛନ୍ନ ମତଲବ ନ ଥିଲା। ଏହି ଆଖ୍ୟାୟିକାର ତତ୍ତ୍ୱାର୍ଥ ଏହାହିଁ ଯେ, ଶାସକ ଦଳକୁ ସମାଲୋଚନା କରିବତ ଓ କୌଣସି ତତ୍ତ୍ୱ ବା ଆଦର୍ଶ ଉପରେ ହିଁ ସମାଲୋଚନା କର। ପ୍ରବୃଚ୍ଛନ୍ନ ମତଲବ ରଖି ସମାଲୋଚନା କରି-ବସିଲେ ବନ୍ଦ, ଧାରଣା, ଅନଶନ ଓ ଶୋଭାଯାତ୍ରା ପ୍ରଭୃତି ନିରର୍ଥକ ତାମାସାରେ ହିଁ ସେହି ସମାଲୋଚନାର ପରିଣତି ଘଟିବ। ବିନୋ-ବାଜୀଙ୍କ ଭାଷାରେ ବିଗ୍ରହ ନ ହୋଇ ତୁଷ୍ଟା ବିଗ୍ରହ—ସଂଘର୍ଷ ହେବ।

---

# ତୃତୀୟ ଅଧ୍ୟାୟ

## ଦୁଇ କିସମର ଜ୍ଞାନୀ

ଉପନିଷଦରେ ଗୁରୁ ଶବ୍ଦକୁ ସମ୍ୟକ୍ ପର୍ଯ୍ୟବେକ୍ଷଣ କଲେ ଆମେ ଦେଖିବାକୁ ପାଇବା ଯେ ନିଷ୍ପକ୍ଷ, ନିର୍ବୈର ଓ ନିର୍ଭୟ ନହେଲେ ସତ୍ୟର ସନ୍ଧାନ କେହି କରି ପାରେ ନାହିଁ, କିଂବା ତାଙ୍କର ମୁଖରୁ କଦାପି ସତ୍ୟର ବାଣୀ ପ୍ରକାଶିତ ହେବ ନ, ଯେଉଁ ବାଣୀ କି ସବୁ ଶ୍ରେଣୀର ଲୋକଙ୍କ ହୃଦୟକୁ ସ୍ପର୍ଶ କରିପାରିବ । ନିଷ୍ପକ୍ଷ, ନିର୍ବୈର ଓ ନିର୍ଭୟ ବ୍ୟକ୍ତି ପ୍ରକୃତ ଗୁରୁ, ବା ଆଚାର୍ଯ୍ୟ ପଦର ଏକମାତ୍ର ଅଧିକାରୀ ବୋଲି ବିନୋବାଜୀଙ୍କ ଅଭିମତ । ଯେଉଁ ସ୍ଥିତପ୍ରଜ୍ଞ ବ୍ୟକ୍ତିମାନଙ୍କର କୌଣସି ଦଳ ବା ବ୍ୟକ୍ତି ବିଶେଷ ପ୍ରତି ଆସକ୍ତି ବା ଦ୍ୱେଷ ନ ଥାଏ, ଯେଉଁମାନଙ୍କର ଶତ୍ରୁ ମିତ୍ର ଭେଦ ନ ଥାଏ, ଯେଉଁମାନେ ଭୟଶୂନ୍ୟ, କ୍ରୋଧଶୂନ୍ୟ, ଏହିପରି ବ୍ୟକ୍ତିମାନଙ୍କୁ ବୁଝିପାରିବାର ଶକ୍ତି ଯେଉଁ ଜାତିର ଥାଏ, ସେ ଜାତି ଧନ୍ୟ ଏହି ବ୍ୟକ୍ତିମାନଙ୍କ ଆଦର୍ଶ ଓ ସିଦ୍ଧାନ୍ତକୁ ଯେଉଁ ମନୀଷୀ ଶାସକ କାର୍ଯ୍ୟରେ ପ୍ରୟୋଗ କରି ସଫଳତା ଅର୍ଜନ କରେ, ସେହି ଶାସକ ଜଗତରେ ଅମର କୀର୍ତ୍ତିର ଅଧିକାରୀ ହୁଏ ।

ତେବେ ଏହିପରି ଜ୍ଞାନୀ ବ୍ୟକ୍ତିଙ୍କ ଚିହ୍ନା ଯିବ କିପରି ? ଶ୍ରୀମଦ୍ ଭଗବତଗୀତା ମତରେ, ରାମାୟଣ ମହାଭାରତ ଓ ଭାଗବତ ପଢି଼ଥିଲେ ଆମେ ଜାଣିପାରିବା ଯେ ସଂଖ୍ୟାରେ ଖୁବ୍ କମ ହେଲେ ବି ଯୋଡ଼ାଏ ଶ୍ରେଣୀର ଜ୍ଞାନୀ ରହିଥାନ୍ତି, ଏହି ଦୁଇ କିସମର୍ ଜ୍ଞାନୀଙ୍କ ମଧ୍ୟରୁ ପ୍ରଥମ କିସମର ଜ୍ଞାନୀ ଉଣା ଅଧିକେ ପୃଥିବୀର ସବୁ ଜାତି ଓ ସମାଜରେ ଅଛନ୍ତି, ଯଦିଓ ଭାରତରେ ଏହି ଜ୍ଞାନୀଙ୍କ ଏକ ନିରବଚ୍ଛିନ୍ନ ପରଂପରା ଯୁଗ ଯୁଗଧରି ଚାଲି ଆସିଛି । ମାତ୍ର ୫୦୦ ବା ହଜାରେ ବର୍ଷର ବ୍ୟବଧାନରେ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ ପୃଥିବୀରେ ଦେଖା ଦିଅନ୍ତି । ଯାହାଙ୍କର ସମ୍ପଦ କ୍ଷମତା ପ୍ରଭୃତି ଐଶ୍ୱର୍ଯ୍ୟ ଥାଏ, ଅଥଚ ଏହି ଅତୁଳ ଐଶ୍ୱର୍ଯ୍ୟରେ ସେ ସମ୍ପୂର୍ଣ୍ଣ ଅନାସକ୍ତ ଥାନ୍ତି, ସେ ହେଉଛନ୍ତି ଏହି ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ । ରାଜା ଜନକ, ଶ୍ରୀରାମଚନ୍ଦ୍ର, ହରିଶ୍ଚନ୍ଦ୍ର, ଶିବି ନଳ, ଯୁଧିଷ୍ଠିର ପ୍ରଭୃତି ପୁରାଣ ଯୁଗର ଶାସକମାନେ ଏହି ଶ୍ରେଣୀର ଜ୍ଞାନୀ । ଐତିହାସିକ ଯୁଗର ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ, ଅଶୋକ, ହର୍ଷ, ଆକବର, ଶିବାଜି ପ୍ରଭୃତି ଏହି ଶ୍ରେଣୀର ଜ୍ଞାନୀ । ସମ୍ପଦ କ୍ଷମତା ପ୍ରଭୃତି ଐଶ୍ୱର୍ଯ୍ୟରେ ଅନାସକ୍ତ ଅଛି ବୋଲି ଖାଲି ମୁହଁରେ କେହି କହିଦେଲେ ସେ ଅନାସକ୍ତ ବୋଲି କୁହାଯିବ ନ । ପ୍ରଥମ ଶ୍ରେଣୀର ଜ୍ଞାନୀଙ୍କ ଆଗରେ ଅର୍ଥାତ୍ ଗୁରୁ ବା ଆଚାର୍ଯ୍ୟଙ୍କ ଆଗରେ ସେମାନେ ବାରଂବାର ଅନାସକ୍ତିର ସଫଳ ପରୀକ୍ଷା ଦେଇଥିବା ଚାହିଁ । ସମ୍ରାଟ ହର୍ଷବର୍ଦ୍ଧନ ପ୍ରତି ପାଞ୍ଚବର୍ଷରେ ଥରେ ଏହି ଅନାସକ୍ତିର ପରୀକ୍ଷା ବ୍ରାହ୍ମଣ ସନ୍ୟାସୀ ଏବଂ ବୌଦ୍ଧ ଭିକ୍ଷୁଙ୍କ ଆଗରେ ଦେଉଥିଲେ । ଚନ୍ଦ୍ରଗୁପ୍ତ, ଅଶୋକ ଆକବର ଏବଂ ଶିବାଜି ଏହି ଚରିଜଣ ଶାସକ ସେମାନଙ୍କର ଅନାସକ୍ତିର ସଫଳ ପରୀକ୍ଷା ବାରଂବାର ନିଜ ନିଜ ଗୁରୁ ବା ଆଚାର୍ଯ୍ୟଙ୍କ ଆଗରେ ଦେଉଥିଲେ ।

ପ୍ରଥମ ଶ୍ରେଣୀର ଜ୍ଞାନୀଙ୍କର ଦେହଟି ଛଡ଼ା ଆଉ କିଛି ନିଜର ହୋଇ ନ ଥାଏ । ଏହି ଦେହଟିକୁ ବି ସେମାନେ ଜଗତର କଲ୍ୟାଣରେ ଉତ୍ସର୍ଗ କରିବାକୁ ସର୍ବଦା ପ୍ରସ୍ତୁତ ଥାନ୍ତି । ସେମାନେ ଯେ ନିଷ୍କାମ, ନିର୍ବୈର, ନିର୍ଭୟ ଏବଂ ସମ୍ପୂର୍ଣ୍ଣ ଭାବରେ ଦେହବୁଦ୍ଧି ଓ ଓ ଦେହାସକ୍ତିରୁ ମୁକ୍ତ ଏ ବିଷୟରେ ନିରବଚ୍ଛିନ୍ନ ଭାବରେ ସେମାନେ ଜନତା ଆଗରେ ପରୀକ୍ଷା ଦେଉଥାନ୍ତି । ବଶିଷ୍ଠ, ଦଧୀଚି, ବିଶ୍ୱାମିତ୍ର, ଶୁକଦେବ ପ୍ରଭୃତି ବହୁ ପୁରାଣବର୍ଣ୍ଣିତ ଋଷିମୁନି ଏହି ପ୍ରଥମ ଶ୍ରେଣୀର ଜ୍ଞାନୀ । ଇତିହାସ ଯୁଗର ବୁଦ୍ଧ, ଯିଶୁ, ଶଙ୍କର, ଚୈତନ୍ୟ, ଶ୍ରୀରାମ-କୃଷ୍ଣ, ମହାତ୍ମାଗାନ୍ଧି, ବିନୋବା ଏହି ପ୍ରଥମ କିସମର ଜ୍ଞାନୀ । ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ ସମ୍ପଦ, କ୍ଷମତା ପ୍ରଭୃତି ବହୁ ଐଶ୍ୱର୍ଯ୍ୟର ଅଧିକାରୀ, କିନ୍ତୁ କାହିଁରେ ଲିପ୍ତ ନୁହନ୍ତି । ଏ ପ୍ରଥମ ଶ୍ରେଣୀର ଜ୍ଞାନୀ ହିଁ ଆଚାର୍ଯ୍ୟ ବା ଗୁରୁ ପଦର ଉପଯୁକ୍ତ ଅଧିକାରୀ ଏବଂ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀହିଁ ଶାସକ ପଦର ଯୋଗ୍ୟ ଅଧିକାରୀ ଅଟନ୍ତି ।

ବହୁ ସାଧୁସନ୍ଥ ସନ୍ନ୍ୟାସୀଙ୍କ ଏକ ନିରବଚ୍ଛିନ୍ନ ପ୍ରବାହ ଆକାରରେ ଆଁକୁମାରୀ ହିମାଳୟ ଧର୍ମ ଭାରତରେ ପ୍ରଥମ କିସମର ଜ୍ଞାନୀଙ୍କ ଅଭାବ ସନ୍ତ୍ରି ରହିଛି । ମାତ୍ର ଦ୍ୱିତୀୟ ଶ୍ରେଣୀର ଜ୍ଞାନୀଙ୍କର ପରଂମ୍ପରା ଭାରତରେ ବା ଅନ୍ୟ କେଉଁଠି ନାହିଁ କାହିଁକି ?

ପ୍ରଥମ ଶ୍ରେଣୀର ଜ୍ଞାନୀମାନେ ହିଁ ନିଜର କଠୋର ସାଧନା ଓ ତପସ୍ୟା ବଳରେ ଦ୍ୱିତୀୟ ଶ୍ରେଣୀ ଜ୍ଞାନୀଙ୍କୁ ପୃଥିବୀରେ ଅବତରଣ କରାଇଥାନ୍ତି । ବଶିଷ୍ଠ ବିଶ୍ୱାମିତ୍ର ପ୍ରମୁଖ ୧୭ ସହସ୍ର ଆର୍ଯ୍ୟଙ୍କ ସମ୍ମିଳିତ ସାଧନା ଓ ତପସ୍ୟାରୁ ହିଁ ଶ୍ରୀରାମଚନ୍ଦ୍ରଙ୍କର ଆବିର୍ଭାବ ହେଲା ।

ବହୁ ଆଚାର୍ଯ୍ୟଙ୍କ ସାଧନା ଓ ତପସ୍ୟାବଳରୁ ହିଁ ଆଚାର୍ଯ୍ୟ କୌଟିଲ୍ୟ ଚନ୍ଦ୍ରଗୁପ୍ତଙ୍କ ପରି ଶିଷ୍ୟଟିଏ ପାଇ ତାହାଙ୍କୁ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ କରି ଗଢ଼ିପାରିଲେ । ଗୌତମ ବୁଦ୍ଧଙ୍କ ସାଧନା ଓ ତପସ୍ୟାରୁ ଉପଗୁପ୍ତଙ୍କ ପରି ଏକ ଆଚାର୍ଯ୍ୟ ଅବତୀର୍ଣ୍ଣ ହୋଇଲେ, ଯେ କି ନିଜର ଆତ୍ମଶକ୍ତି ବଳରେ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ରୂପାନ୍ତର କରିପାରିଲେ । ହିନ୍ଦୁ ମୁସଲମାନଙ୍କ ଭିତରେ ସାମ୍ୟଶାନ୍ତି ଆଣିବାକୁ ବହୁ ସୁଫି ଫକୀର ଏବଂ ହିନ୍ଦୁ ସନ୍ନ୍ୟାସୀଙ୍କର ସମ୍ମିଳିତ ତପସ୍ୟା ଓ ସାଧନାରୁ ଫତେପୁରର ନିବିଡ଼ ଜଙ୍ଗଲରେ ଫକିର ସେଲିମଙ୍କ ଆବିର୍ଭାବ ଏବଂ ଏହି ଅସାଲଙ୍ଗଳା ଫକୀରଟିର ଅଲୌକିକ ସାଧନାର ଫଳ ହିଁ ମୋଗଲ ବାଦଶାହା ଆକବର । ଦେଶକାଳପାତ୍ରକୁ ବିବେଚନା କରି ପ୍ରଥମ ଶ୍ରେଣୀର ଜ୍ଞାନୀମାନେ ଯେପରି ସାଧନା କରିବେ, ଏକ ଅଦ୍ୱିତୀୟ ସଚ୍ଚିଦାନନ୍ଦ ସେହିପରି ଆକାର ଧରି ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ ରୂପରେ ଦେଖାଦେବେ ।

ଆରିଷ୍ଟୋଟଲଙ୍କ ଦର୍ଶନ ଓ ଆଦର୍ଶ ହିଁ ମହାବୀର ଆଲେକଜାଣ୍ଡରଙ୍କ ରୂପ ଗ୍ରହଣ କଲା । ରୁଷୋ ଭଲ୍‌ଟେୟାରଙ୍କ ଚିନ୍ତା ମହାବୀର ନେପୋଲିୟନଙ୍କୁ ଜନ୍ମ ଦେଲା । ଋଷି ମାର୍କସଙ୍କ ଆଦର୍ଶ ହିଁ ଲେନିନ ଓ ମାଓସେତୁଙ୍ଗ ରୂପ ପରିଗ୍ରହ କରିଛି । ପ୍ରଥମ ଶ୍ରେଣୀର ଜ୍ଞାନୀଙ୍କ ସାଧନା ଯେପରି ମନୀଷୀ, ଶାସକ ଓ ଉଦାରମନା ଦିଗ୍‌ବିଜୟୀ ଯୋଦ୍ଧାଙ୍କୁ ସୃଷ୍ଟି କରେ, ଠିକ୍ ସେହିପରି ଜାତି ବା ସମାଜର ହୃଦୟରେ ଅଜ୍ଞାନଜାତ କୌଣସି ତୀବ୍ର ତୃଷ୍ଣାର ଅବରୋଧ ଘଟିଲେ, ଏହି ଅବରୁଦ୍ଧ ତୃଷ୍ଣା ହିଁ ରାବଣ, କଂସ, ନେରୋ, ହିଟଲର ପ୍ରଭୃତି ରୂପରେ ପ୍ରକାଶିତ ହୁଏ । ଏ ମଧ୍ୟ ସେହି ଅଦ୍ୱିତୀୟ ସଚ୍ଚିଦାନନ୍ଦଙ୍କର ଏକ ବିକଟ, ଭୟଙ୍କର ଓ ବୀଭତ୍ସ ରୂପ ଅଟେ ।

ମୋର ଦୃଢ଼ ଏବଂ ନିଶ୍ଚିତ ବିଶ୍ୱାସ ଯେ ମହାତ୍ମା ଗାନ୍ଧି ଆଚାର୍ଯ୍ୟ ବିନୋବା, ଶ୍ରୀମା, ଶ୍ରୀ ଅରବିନ୍ଦଙ୍କ ସାଧନା ଓ ତପସ୍ୟା ଧୀରେ ଧୀରେ ଅତିମାନସ ଶକ୍ତିସମ୍ପନ୍ନ ଦିବ୍ୟଗୁଣଭୂଷିତ ବିଜ୍ଞାନୀ ଶ୍ରେଣୀର ଏକ ଜାତିରେ ରୂପାନ୍ତରିତ ହେଉଛନ୍ତି, ଯେ କି ସାରା ବିଶ୍ୱରେ ଏକ ବିସ୍ମୟର ଚହଳ ପକାଇଦେବେ, ଯେ କି ଅତୀତ ଯୁଗରୁ ଆଜି ପର୍ଯ୍ୟନ୍ତ ଐତିହାସିକ ଶାସକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଆସନରେ ବସିଥିବା ଅଶୋକଙ୍କଠାରୁ ବି ଯେ ଅଧିକା କିଛି ବିସ୍ମୟର ସୃଷ୍ଟି କରିବେ। ଅଶୋକ ଯୁଦ୍ଧ ଓ ଅସ୍ତ୍ର ତ୍ୟାଗ କରିଥିଲେ। କେବଳ ମାତ୍ର ଗୋଟିଏ କଳିଙ୍ଗ ଯୁଦ୍ଧ ଛଡ଼ା ସାମାନ୍ୟ ଦଙ୍ଗାହାଙ୍ଗାମା ବି ଅଶୋକଙ୍କ ବିଶାଳ ସାମ୍ରାଜ୍ୟ ମଧ୍ୟରେ କେଉଁଠି ଘଟିଥିବା ଉଲ୍ଲେଖ ନାହିଁ। କିନ୍ତୁ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକ ସୈନ୍ୟସଂଖ୍ୟା କମାଇ ଦେଇ ପାରିଥାନ୍ତି, ଅସ୍ତ୍ରଶସ୍ତ୍ରର ପରିମାଣ ବି କମାଇ ଦେଇଥିବେ; ମାତ୍ର ସେନା ଓ ହାତ ହତିଆର ସାମ୍ରାଜ୍ୟରୁ ପୂର୍ଣ୍ଣ ଭାବରେ ବର୍ଜନ କରିବାର ଉଲ୍ଲେଖ ନାହିଁ। ଭାରତରେ ଏହି ଯେଉଁ ବିଜ୍ଞାନୀ ଶ୍ରେଣୀର ଜାତି ବା ମନୀଷୀ ଶାସକ ଗାନ୍ଧି ଅରବିନ୍ଦଙ୍କ ସାଧନାରୁ ଧୀରେ ଧୀରେ ରୂପାନ୍ତରିତ ହେଉଛନ୍ତି, ସେ କି ଅଶୋକଙ୍କ ପରି ସକଳ ପ୍ରକାର ଯୁଦ୍ଧ ଓ ଅସ୍ତ୍ର ବର୍ଜନ କରିବେ, ତାହାହିଁ କେବଳ ନୁହେ; ପରନ୍ତୁ ଅଶୋକଙ୍କ ସାମ୍ରାଜ୍ୟକୁ ଅନ୍ୟ କେହି ରାଜ୍ୟ ଆକ୍ରମଣ କରିବାର ଶୁଣାଯାଇ ନ ଥିବାପରି ଭାରତ ତାର ପଡ଼ୋଶୀ ରାଜ୍ୟଙ୍କୁ ଯେ ପ୍ରେମ ମୈତ୍ରୀରେ ବାନ୍ଧି ରଖିବ, ଏତିକି-ନୁହେ, ମହାତ୍ମାଗାନ୍ଧିଙ୍କ ସ୍ୱପ୍ନ ବି ସଫଳ ହେବ; ତାହାର ସେନା ରହିବେ ନାହିଁ କି, କୈଣସି ପ୍ରକାର ହତିଆର ବି ରହିବ ନାହିଁ। ଅଶୋକଙ୍କର ବିଜ୍ଞାନୀ କଳେବର ଧରି ଧୀରେ ଧୀରେ ରୂପାନ୍ତରିତ ହେଉଥିବା ଏହି ମନୀଷୀ ଶାସକଙ୍କ ବାର୍ତ୍ତା ବିଶ୍ୱରେ ଚହଳ ଓ ବିସ୍ମୟ ପକାଇଦେବ। ନିରସ୍ତ୍ର ଏବଂ ସକଳ ଆଶଙ୍କାମୁକ୍ତ ଭାରତ

ଆଗରେ ସବୁ ବଳଶାଳୀ ଧନଶାଳୀ ଜାତିଙ୍କ ମଥା ପ୍ରେମ ଏବଂ ଭକ୍ତିରେ ଆନତ ହେବ । ଅର୍ଦ୍ଧନଗ୍ନ ବାମନଙ୍କର ହସ୍ତ ବଳୀର ଗର୍ବିତ ମଥାଉପରେ ଆଶୀର୍ବାଦର ଧୂଳ ବୃଷ୍ଟି କରିବ । ଏହା ମୋର କଳ୍ପନା ନୁହେ, ମାତ୍ର ଅତି ଅଳ୍ପଦିନ ମଧ୍ୟରେ ଏହା ରୂପ ନେବ । ଇତିହାସର ନିଶ୍ଚିତ ପୁନରାବୃତ୍ତି ଘଟିବ । ଭଗବାନ ଗୌତମ ବୁଦ୍ଧଙ୍କ ତିରୋଭାବର ପ୍ରାୟ ୨୦୦ ବର୍ଷ ପରେ ତାଙ୍କର ଆଦର୍ଶକୁ ରୂପାୟିତ କଲେ ଅଶୋକ । ମହାତ୍ମାଗାନ୍ଧିଙ୍କ ତିରୋଧାନ ଆଜିକି ୨୮ ବର୍ଷ ହେଲ ହୋଇଛି । ପୁଣି ବୁଦ୍ଧଙ୍କ ବେଳେ ସମାଜ ଯାହା ଥିଲା, ଆଜି ତାହା ନାହିଁ । ଆଜି ବିଜ୍ଞାନର ପ୍ରଭାବରୁ ସମୟ ଓ ସ୍ଥାନର ଧ୍ୱଂସ ଘଟିଛି । ଘଟଣାବଳି ଅତି ଶିଘ୍ର ଭାବରେ ଗୋଟିକ ପରେ ଗୋଟିଏ ଏପରି ଘଟି-ଯାଉଛି, ଦଶବର୍ଷ ତଳର ସମାଜ ପୁରୁଣାକାଳିଆ ଓ ପଛୁଆ ବୋଲି ଜଣାଯାଉଛି । ଏଣୁ ଗାନ୍ଧିଙ୍କ ଆଦର୍ଶ ଓ ଦର୍ଶନ ବଡ଼ ଜୋର ଆଗାମୀ ଦଶଟି ବର୍ଷ ମଧ୍ୟରେ କାର୍ଯ୍ୟକାରୀ ହୋଇଯିବ ବୋଲି ମୋର ବିଶ୍ୱାସ ।

ବିନୋବାଜୀ ଯଦିଓ ସ୍ପଷ୍ଟ ଭାବରେ କହିନାହାନ୍ତି, ତଥାପି ଇନ୍ଦିରାଜୀଙ୍କ ପ୍ରତି ତାଙ୍କର ଆଶୀର୍ବାଦ, ଜରୁରୀ ପରିସ୍ଥିତିକୁ ଅନୁଶାସନ ପର୍ବ ଆଖ୍ୟା ଦେବା ଇତ୍ୟାଦିରୁ ଇନ୍ଦିରାଜୀ ହିଁ ଗାନ୍ଧିଙ୍କ ସ୍ୱପ୍ନର ଭାରତକୁ ରୂପାୟିତ କରିପାରିବେ, ଏହା ସେ ସୂଚାଇଛନ୍ତି । ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ଆଶୀର୍ବାଦ ଇନ୍ଦିରାଜୀଙ୍କ ଉପରେ ନିଶ୍ଚୟ ପଡ଼ୁଛି । ତାଙ୍କର ଅନନ୍ୟସାଧାରଣ, ବିପ୍ଳବକର ସାଫଲ୍ୟମଣ୍ଡିତ ଏବଂ ନିର୍ବିରୋଧ ଗୋଟିକ ପରେ ଗୋଟିଏ ପ୍ରଶାସନିକ ଆଚରଣରୁ ତଥା କଥିତ ଶ୍ରୀ ମା ଅରବିନ୍ଦଙ୍କ ଅତିମାନସଶକ୍ତି ତତ୍ତ୍ୱ ଏକ ଅବାସ୍ତବ ସ୍ୱପ୍ନ ନୁହେ ବୋଲି ପ୍ରମାଣିତ ହେଉଛି । ଏହି ଶକ୍ତି ପୃଥିବୀର

ସବୁଠି କାମ କରିପିବାର ଉପଲବ୍ଧି କରୁଛି । ଏହି ଶକ୍ତି ବହୁ ବ୍ୟକ୍ତିଙ୍କଠାରେ ବି କାମ କରିବାର ମୁଁ ଅନୁଭବ କରୁଛି । ମୋର ବିଶ୍ୱାସ, ଏହି ଶକ୍ତିର ଅବତରଣ ଇନ୍ଦିରାଙ୍କଠାରେ ପରିପ୍ରକାଶ ହେଉଛି । ଇନ୍ଦିରାଙ୍କଠାରେ ହିଁ ଅଢ଼ାଇହଜାର ବର୍ଷ ତଳର ଅଶୋକଙ୍କ ଆଦର୍ଶ ପୁଣି ଥରେ ରୂପ ନେବାକୁ ଯାଉଛି; ସମଗ୍ର ବିଶ୍ୱରେ ଏକ ବିସ୍ମୟ ସୃଷ୍ଟି କରିବାକୁ ଆଗେଇ ଯାଉଛି । ଗାନ୍ଧି ବିନୋବାଙ୍କ ଶୋଷଣମୁକ୍ତ ଗ୍ରାମ-ସ୍ୱରାଜ୍ୟକୁ ଇନ୍ଦିରାଜୀ ରୂପାୟିତ କରିବେ ବୋଲି ମୋର ନିଶ୍ଚିତ ଧାରଣା । ଜୟପ୍ରକାଶ ଜୀ ଇନ୍ଦିରାଙ୍କୁ ଏକଛତ୍ର ଶାସକ ବୋଲି ସଭା ସମିତିରେ କହିଥିଲେ; ଆଚାର୍ଯ୍ୟ ବିନୋବା ଏଣେ କହିଲେ, "ଇନ୍ଦିରା ଗାନ୍ଧି ଏକ ଖାଣ୍ଟି ଗଣତନ୍ତ୍ରବାଦୀ" । ମୁଁ ତ ଏହି ପରସ୍ପରବିରୋଧୀ କଥାକୁ ମୋ ବାଟରେ ଏହିପରି ସମନ୍ୱୟ କରିଥିଲି—ଏକ ଅଦ୍ୱିତୀୟ ସଚ୍ଚିଦାନନ୍ଦହିଁ ବିଶ୍ୱରୂପ ସାଜି ଲୀଳା କରି ଯାଉଛନ୍ତି । ସେ କାହାଠି ତାଙ୍କର ଶକ୍ତିକି ବେଶୀ ପ୍ରକାଶ କରନ୍ତି, କେଉଁଠି କମ୍ ପ୍ରକାଶ କରନ୍ତି । ଏଣୁ ବିନୋବାଙ୍କ ରୂପ ଧରି ସେହି କହୁଛନ୍ତି, ଇନ୍ଦିରା ଜଣେ ଖାଣ୍ଟି ଗଣତନ୍ତ୍ରୀ । ଜୟପ୍ରକାଶ ବେଶରେ ସେହି ଲୀଳାମୟ କହୁଛନ୍ତି—ଇନ୍ଦିରା ଏକଛତ୍ର ଶାସକ । ଇନ୍ଦିରା ବେଶଧରି ସେହି ବି ଜରୁରୀ ପରିସ୍ଥିତି ଜାରୀ କରୁଛନ୍ତି । ସବୁଠି ତାଙ୍କର ମଙ୍ଗଳମୟ ଅଦେଖା ହାତ କାମ କରି ଚାଲିଛି । ତେବେ ସେ ସଜ୍ଜନ ଦୁର୍ଜ୍ଜନ ସବୁ ମୁଖା ଧରିଲେ ବି ଦୁର୍ଜନକୁ ମୁଁ ସମର୍ଥନ କରିବି ନାହିଁ ବରଂ ଦୁର୍ଜନ ପାଖରୁ ଦୂରେଇ ରହି ମନେ ମନେ ଜପିଯାଉଥିବି "ସବୁ ତୁଇ, ଦୁର୍ଜ୍ଜନ ବି ତୁ, ସଜ୍ଜନ ବି ତୁ" ।

ଇନ୍ଦିରାଜୀ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ କି ନୁହନ୍ତି, ଏହା ମଧ୍ୟ କାଳକ୍ରମରେ ପ୍ରମାଣିତ ହୋଇଯିବ । ଜନ ଗୁନ୍ଥରଙ୍କ ଭାଷାରେ

ଗୌତମ ବୁଦ୍ଧ ଓ ଗାନ୍ଧି ଏକା ସ୍ତରର ମହାମାନବ । ମୋ ଭାଷାରେ ମୁଁ ତ କହିବି, ଗୌତମ ବୁଦ୍ଧ, ଯିଶୁ ଏବଂ ଶ୍ରୀ ଚୈତନ୍ୟ ଏହି ତିନିଙ୍କ ଆଦର୍ଶ ଗାନ୍ଧିଙ୍କଠାରେ ରୂପାୟିତ ହୋଇଛି । ସୁପ୍ରସିଦ୍ଧ ଲେଖକ ଐତିହାସିକ ଏଚ୍. ଜି. ଓ୍ୱେଲସ ଅଶୋକଙ୍କୁ ପୃଥିବୀର ଶାସକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଆସନ ଦେଇଛନ୍ତି । ମୋ ଭାଷାରେ ମୁଁ ତ କହିବି, ଅଶୋକଙ୍କ ଅପୂର୍ଣ୍ଣ ଆଦର୍ଶକୁ ଲୋକମାତା ଇନ୍ଦିରାହିଁ ପୂର୍ଣ୍ଣ କରିବେ ।

ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀଙ୍କ ମିଳନ ବା ଭେଟହିଁ ଇତିହାସରେ ସୁବର୍ଣ୍ଣ ଯୁଗ ସୃଷ୍ଟି କରେ ଏବଂ ସାମ୍ୟ ଶାନ୍ତି ମୈତ୍ରୀ ପ୍ରେମର ସମାଜ ସ୍ଥାପନ କରେ । ଦୁଇ ଶ୍ରେଣୀର ଜ୍ଞାନୀଙ୍କ ମିଳନକୁ ପୁରାଣରେ ହରିହର ଭେଟ ବା ଭକ୍ତ ଭଗବାନଙ୍କ ମିଳନ କୁହାଯାଏ । ଯେଉଁ ଜ୍ଞାନୀ ଶାସକଙ୍କ ପାଦରେ ଐଶ୍ୱର୍ଯ୍ୟରୂପୀ ଲକ୍ଷ୍ମୀ ଲୋଟି-ଯାଉଥାନ୍ତି, ଅଥଚ ସେ ଏଥିରେ ଟିକିଏ ବି ଆସକ୍ତ ହୁଅନ୍ତିନି, ପୁଣି ଯେଉଁ ଜ୍ଞାନୀଙ୍କର ଧନ ଜନ କ୍ଷମତା କିଛି ବି ନାହିଁ ଅଥଚ ସେ ସ୍ଥିତପ୍ରଜ୍ଞ ରହି ପରମାନନ୍ଦର ଅଧିକାରୀ ହୁଅନ୍ତି, ଏହିପରି ଦୁଇଶ୍ରେଣୀର ଜ୍ଞାନୀଙ୍କର ଯଦି ହାର୍ଦ୍ଦିକ ମିଳନ ଘଟେ ତ ଅସାଧ୍ୟ ବି ସାଧ୍ୟ ହୁଏ, ଅସମ୍ଭବ ବି ସମ୍ଭବ ହୁଏ । ଲୋକ ସଂଗ୍ରହ ବି ଆଶାତୀତ ହୋଇଥାଏ । ସମାଜର ଏକ ପ୍ରାନ୍ତରେ ଯଦି ଐଶ୍ୱର୍ଯ୍ୟଶାଳୀ ମାତ୍ର ଅନାସକ୍ତ ଜ୍ଞାନୀ ବ୍ୟକ୍ତିମାନେ ଭାଗ୍ୟକ୍ରମେ ଦେଖା ଦିଅନ୍ତି ଏବଂ ଅପର ପ୍ରାନ୍ତରେ ଯଦି ସମ୍ପଦ-କ୍ଷମତାତ୍ୟାଗୀ ଜ୍ଞାନୀ ବ୍ୟକ୍ତିମାନେ ଏହି ଐଶ୍ୱର୍ଯ୍ୟଶାଳୀ ମାତ୍ର ଅନାସକ୍ତ ଜ୍ଞାନୀଙ୍କ ସହ ଯୋଗସୂତ୍ର ରଖନ୍ତି, ତେବେ ଧର୍ମ ନିର୍ଦ୍ଧନ ସମସ୍ୟା ପାଖରୁ ଆରମ୍ଭ କରି ସବୁ ସମସ୍ୟା ନୈଶ ସ୍ୱପ୍ନପରି ଉଭାଇ-ଯାଏ ।

ସକ୍ତା କର୍ମଣ୍ୟ ବିଦ୍ୱାଂସଃ ଯଥା କୁର୍ବନ୍ତି ଭରତ
କୁର୍ଯ୍ୟାତ୍ ବିଦ୍ୱାନ୍ ତଥାସକ୍ତ ଶ୍ଚିକିର୍ଷୁର୍ଲୋକ ସଂଗ୍ରହଃ । ଗୀତା ।

ଧନତୃଷ୍ଣା ଓ କ୍ଷମତାତୃଷ୍ଣାରେ ଆସକ୍ତ ହୋଇ ଉଚ୍ଚ ଲୋକେ ଯେପରି ଆଚରଣ କରନ୍ତି, ଅର୍ଥ ଓ କ୍ଷମତାରୁ ବଞ୍ଚିତ ଜ୍ଞାନ-ହୀନ ଦରିଦ୍ର ଦୁର୍ବଳ ଲୋକେ କାମକ୍ରୋଧର ବଶୀଭୂତ ହୋଇ ଯେପରି ଆଚରଣ କରନ୍ତି, ଐଶ୍ୱର୍ଯ୍ୟଶାଳୀ ମାତ୍ର ଅନାସକ୍ତ ଜ୍ଞାନୀ ଲୋକେ ପୁଣି ସର୍ବୈଶ୍ୱର୍ଯ୍ୟତ୍ୟାଗୀ ମାତ୍ର ନିର୍ଦ୍ୱନ୍ଦ୍ୱ ଜ୍ଞାନୀ ଲୋକେ ସମାଜର ଉଭୟ ପ୍ରାନ୍ତରେ ରହିବା ଦ୍ୱାରା ଦରିଦ୍ର ଦୁର୍ବଳ ଲୋକଙ୍କୁ ଆତ୍ମ-ବଳରେ ଉଦ୍‌ବୁଦ୍ଧ କରିପାରିବେ, ପୁଣି ଧନ ଓ କ୍ଷମତାମଦରେ ଆସକ୍ତ ଥିବା ଧନୀ ଓ ସବଳ ଲୋକଙ୍କୁ ଅନାସକ୍ତ ଏବଂ ମୋହମୁକ୍ତ କରି ଲୋକସଂଗ୍ରାହକ ହୋଇପାରିବେ ।

---

# ଚତୁର୍ଥ ଅଧ୍ୟାୟ

## ତୃଷ୍ଣାର ନିୟନ୍ତ୍ରଣ ହିଁ ଜୀବନର ଲକ୍ଷ୍ୟ

ଧନତୃଷ୍ଣା, କ୍ଷମତାତୃଷ୍ଣା ପ୍ରଭୃତି ସକଳ ପ୍ରକାର ଲାଳସାକୁ ନିୟନ୍ତ୍ରିତ କରି ନିର୍ଦ୍ଦ୍ୱନ୍ଦ ହେବା ହିଁ ଜୀବନର ଲକ୍ଷ୍ୟ ବା ଧର୍ମ । ଏହି ଲକ୍ଷ୍ୟଲାଭରେ ପରମାନନ୍ଦପ୍ରାପ୍ତି ଘଟେ । ସମାଜ ଏହି ଧର୍ମର ଭିତ୍ତି ଉପରେ ପ୍ରତିଷ୍ଠିତ ନ ହୋଇ ଯେବେ ଅବାଧ ଇନ୍ଦ୍ରିୟତୃପ୍ତିର ଭିତ୍ତି ଉପରେ ପ୍ରତିଷ୍ଠିତ ହୁଏ ତ, ଏକ ମିଥ୍ୟା ଧର୍ମ, ମିଥ୍ୟା ଭଗବାନ୍ ଏବଂ ଆତ୍ମପ୍ରତାରଣାମୂଳକ ପ୍ରଥା, ଆଦବକାଏଦା ଓ ଦୁଃସହ ବିଧି-ନିଷେଧର ପରଦା ମଧ୍ୟରେ ଥାଇ ମୁଷ୍ଟିମେୟ କେତେକ ଚତୁର ବ୍ୟକ୍ତି ସକଳ ପ୍ରକାର ଐଶ୍ୱର୍ଯ୍ୟକୁ ନିଜର ଅଧିକାରରେ ରଖି ନିଜେ ଭୋଗବିଳାସରେ ମଗ୍ନ ରହନ୍ତି ଏବଂ ବହୁ ବ୍ୟକ୍ତିଙ୍କି କେବଳ ମାତ୍ର ଦେହରକ୍ଷା ପାଇଁ ଯେତିକ ନ ହେଲେ ନ ଚଳେ, ସେତିକ ମାତ୍ର ଯୋଗାଇ ବାକି ସବୁ ନିଜେ ମାରିନିଅନ୍ତି । ଯେଉଁ ବ୍ୟକ୍ତି ସ୍ଥିତପ୍ରଜ୍ଞ ଜ୍ଞାନୀ, ସେ ଜାଣିପାରେ ଏବଂ ଦିବ୍ୟ ଦୃଷ୍ଟିରେ ଦେଖିପାରେ ଯେ ତୃଷ୍ଣାକୁ ସଂଯତ କରି ନିଜର ଦେହରକ୍ଷା ପାଇଁ ଯେତିକ ନ ହେଲେ ନ ଚଳେ, ସେତିକରେ ତୃପ୍ତ ରହି ବଳକା ଭୋଗ୍ୟ ବସ୍ତୁକୁ କ୍ଷୁଧା-କାତର, ବୁଦ୍ଧିହୀନ, ଜ୍ଞାନହୀନ ଲୋକଙ୍କୁ ଦେଇ ନିଜେ ସତ୍ୟର

ସନ୍ଧାନରେ ମଣିଷ ରହିବା ଦରକାର ହିଁ ପରମାନନ୍ଦ ଓ ନିର୍ଦ୍ୱନ୍ଦ୍ୱତା ମିଳେ । ଲୋକସଂଗ୍ରହ ବା ଲୋକଶିକ୍ଷା ହେବା ସଙ୍ଗେ ସଙ୍ଗେ ସମାଜର ଶ୍ରୀବୃଦ୍ଧି ଘଟେ । ମାତ୍ର ଆଜି ପରିସ୍ଥିତି ଓଲଟା ହୋଇଛି । ଯେଉଁମାନଙ୍କ ବୁଦ୍ଧି ଓ ଯୋଗ୍ୟତା କମ୍ ଅଥଚ ଭୋଗଲିପ୍ସା ଅଦମ୍ୟ, ସେହିମାନଙ୍କୁ ସର୍ବବିଧ ଭୋଗରୁ ବଞ୍ଚିତ କରାଯାଇ ଯେଉଁମାନଙ୍କର ବେଶୀ ବୁଦ୍ଧି ଓ ଯୋଗ୍ୟତା ଅଛି, ଏଣୁ ଭୋଗ୍ୟ ବସ୍ତୁକୁ ନିଜେ ତ୍ୟାଗ କରି ତାହାକୁ ଏହି କୋଟି କୋଟି କ୍ଷୁଧାର୍ତ୍ତ ଅଯୋଗ୍ୟ ବ୍ୟକ୍ତିଙ୍କ ସେବାରେ ବିନିଯୋଗ କରିବା କଥା, ସେମାନେ ତାହା ନ କରି ନିଜେ ସବୁ ଆବୁରୁଛନ୍ତି ।

ଯୋଗ୍ୟତା ଅଯୋଗ୍ୟତାର ମାପକାଠି କ'ଣ ହୋଇପାରେ ? ଯାହାର ବହୁ ଐଶ୍ୱର୍ଯ୍ୟ ଅଛି, ସେ କଣ ଯୋଗ୍ୟ ? ଯାର କିଛି ନାହିଁ, ସେ କଣ ଅଯୋଗ୍ୟ ? ମାର୍କସ୍ ଏବଂ ଗାନ୍ଧି ଉଭୟଙ୍କ ମତରେ ସେହି ହେଉଛି ଯୋଗ୍ୟ, ଯେ ସେବାଆକାରରେ ସମାଜକୁ ବେଶୀ ଦିଏ ମାତ୍ର ସ୍ୱେଚ୍ଛାରେ ସବୁଠୁ କମ ନେବାରେ ଆନନ୍ଦ ପାଏ ।

ଏଣୁ ସେହି ହେଉଛି ଯୋଗ୍ୟ ବ୍ୟକ୍ତି ଯାହାଙ୍କ ପାଦରେ ଐଶ୍ୱର୍ଯ୍ୟଲକ୍ଷ୍ମୀ ଧୂଳି ପରି ଲୋଟିଯାଉଛନ୍ତି, ମାତ୍ର ସେ ତହିଁରେ ଅନାସକ୍ତ ରହିଛନ୍ତି । ପୁଣି ସେହି ହେଉଛି ଯୋଗ୍ୟ, ଯାହାର କଣା-ପଇସାଟିଏ ନାହିଁ କି ଆତ୍ମରକ୍ଷା ପାଇଁ ଖଣ୍ଡିଏ ଭଙ୍ଗା ଯଷ୍ଟି ବି ନାହିଁ; ଯାହାର ଭୟ ବା ଉଦ୍‌ବେଗ ବି ନାହିଁ, ଯେ ସଦାପ୍ରଶାନ୍ତ ଓ ନିର୍ଦ୍ୱନ୍ଦ୍ୱ । ପୂର୍ବ ଅଧ୍ୟାୟରେ ଯେଉଁ ଦୁଇ ଶ୍ରେଣୀର ଜ୍ଞାନୀଙ୍କ କଥା କହିଛି, ଯୋଗ୍ୟ କହିଲେ କେବଳ ଏହି ଦୁଇ ଶ୍ରେଣୀର ଜ୍ଞାନୀଙ୍କି ବୁଝାଏ । ଏଣୁ ଯାହାର ତୃଷ୍ଣା ବା ଆସକ୍ତି ଯେ ଯେତିକି ଯେତିକି ନିୟନ୍ତ୍ରିତ କରିପାରେ ସେ ସେତିକି ଯୋଗ୍ୟତାର ସୋପାନରେ ଅଧିରୂଢ଼ ହୁଏ ।

ଯେ ଯେତିକ ତୃଷ୍ଣାକାତର, ମାନାପମାନ ଜୟପରାଜୟ ନିନ୍ଦାସ୍ତବ ପ୍ରଭୃତି ଦ୍ୱନ୍ଦ୍ୱରେ ମୋହଗ୍ରସ୍ତ, ସେ ସେତିକି ଅଯୋଗ୍ୟ ଓ କରୁଣାର ପାତ୍ର ହୁଏ ।

ଇନ୍ଦ୍ରିୟପରତନ୍ତ୍ର ବ୍ୟକ୍ତିଗତ ସ୍ୱାର୍ଥକୁ ସମାଜଜୀବନର ମୂଳଭିତ୍ତି କରିବାକୁ ନ ଦେଇ, ପରସ୍ପର ସହଯୋଗମୂଳକ ସେବାକୁ ମୂଳଭିତ୍ତି କରି ଏକ ସାମ୍ୟବାଦୀ ଗଣତାନ୍ତ୍ରିକ ସମାଜର ବିଦ୍ୟମାନତାର ପ୍ରମାଣ ଉପନିଷଦ ରାମାୟଣ ମହାଭାରତରୁ ସ୍ପଷ୍ଟ ସୂଚିତ ହେଉଛି । ବ୍ରିଟିଶ ଶାସନର ଅଭ୍ୟୁଦୟ ପର୍ଯ୍ୟନ୍ତ ଭାରତର ପ୍ରତ୍ୟେକ ଗ୍ରାମ ଏକ ଏକ ସ୍ୱୟଂଶାସିତ ପ୍ରଜାତନ୍ତ୍ର ଥିଲା । ଏହିସବୁ ସ୍ୱାବଲମ୍ବୀ ଗ୍ରାମଗୁଡ଼ିକର ପଞ୍ଚାୟତ କେନ୍ଦ୍ର ବା କେନ୍ଦ୍ରର ଅଧୀନରେ ଥିବା ପ୍ରାଦେଶିକ ଶାସନ-ସଂସ୍ଥାକୁ ରାଜସ୍ୱ ଗଣ୍ଡାକ ଦେଇ ଦେଉଥିଲେ । ହିନ୍ଦୁ, ଆଫଗାନ, ମୋଗଲ ବା ମରହଟ୍ଟା ଶାସକମାନେ ଗ୍ରାମରୁ ରାଜସ୍ୱ ନେଇ ନିଜ କଥା ନିଜେ ବୁଝିବାକୁ ଗ୍ରାମମାନଙ୍କୁ ଛାଡ଼ିଦେଉଥିଲେ । ଭାରତର ଏହି ସ୍ୱୟଂଶାସିତ ଗ୍ରାମଗୁଡ଼ିକ ହିଁ ତାର ସକଳ ଶକ୍ତିର ଆଧାରସ୍ୱରୂପ ଥିଲା । ମାର୍କସ୍ ତାଙ୍କର ଡାସକାପିଟାଲ ପୁସ୍ତକର ଏକ ଫୁଟନୋଟରେ ଲେଖିଛନ୍ତି ଯେ ଅତି ପ୍ରାଚୀନ ଯୁଗରୁ ଇଷ୍ଟ ଇଣ୍ଡିଆକମ୍ପାନୀର ଶାସନ ଆସିବା ପର୍ଯ୍ୟନ୍ତ ଭାରତର ସ୍ୱାବଲମ୍ବୀ ଗ୍ରାମଗୁଡ଼ିକ ଗଣତାନ୍ତ୍ରିକ ଓ ସାମ୍ୟବାଦୀ ଥିଲା । ମାତ୍ର ସୁଦୂର ଲଣ୍ଡନ ସହରର ଲାଇବ୍ରେରୀରେ ବସି ସେ ଭାରତ ସମ୍ବନ୍ଧରେ ବହିମାନ ପଢ଼ି ସାମ୍ୟ ଶାନ୍ତି ମୈତ୍ରୀଉପରେ ପ୍ରତିଷ୍ଠିତ ଗ୍ରାମ୍ୟ ସମାଜକୁ ଅମାର୍ଜିତ କମ୍ୟୁନିଜିମ ବୋଲି କହିଛନ୍ତି, ଯେଉଁ ପ୍ରକାର ଗ୍ରାମରୁ କି ଚାଣକ୍ୟ, କାଳିଦାସ, ଆଚାର୍ଯ୍ୟ ଶଙ୍କର, ଭାସ୍କରାଚାର୍ଯ୍ୟ, ତୁଳସୀ ଦାସ, ରାମାନୁଜ, ଚୈତନ୍ୟ ପ୍ରଭୃତି ଜନ୍ମି ଥିଲେ। ସେ ଭାରତକୁ ଆସି ଭାରତର ଗ୍ରାମଜୀବନକୁ ସ୍ୱଚକ୍ଷୁରେ ଦେଖିଥିଲେ

ଏବଂ ଗୀତା, ଉପନିଷଦ, ବ୍ରହ୍ମସୂତ୍ରକୁ ତଦ୍‌ଗତପ୍ରାଣ ହୋଇ ସ୍ୱାଧ୍ୟାୟ କରି ଥିଲେ ଏହାକୁ ଅମାର୍ଜିତ କମ୍ୟୁନିଜ୍‌ମ ନ କହି ମାର୍ଜିତ ଓ ବୈଜ୍ଞାନିକ କହିଥାନ୍ତି ଏବଂ ବେଦାନ୍ତକୁ ଗ୍ରହଣ ନ କରିପାରିଲେ ବି ତର୍କମୂଳକ ସାଂଖ୍ୟଦର୍ଶନକୁ ଆଦରିନେଇଥାନ୍ତେ ।

ପୃଥିବୀର ଅନ୍ୟ ଏକ ସୁସଭ୍ୟ ଅଞ୍ଚଳରେ ଏହି ପ୍ରକାର ସାମ୍ୟବାଦୀ ଗଣତାନ୍ତ୍ରିକ ସ୍ୱାବଲମ୍ବୀ ଗ୍ରାମ୍ୟ-ଅର୍ଥନୀତିଭିତ୍ତିକ ସମାଜ ରହିଥିଲା । ଏହି ଅଞ୍ଚଳଟି ହେଉଛି ଚୀନ୍ । ଚୀନ୍‌ରେ ଏକ ଉଦାର ହେତୁବାଦୀ ଓ କନ୍‌ଫ୍ୟୁସୀୟ କମ୍ୟୁନିଜ୍‌ମ ଚୀନା ସମାଜର ଗ୍ରାମ୍ୟଜୀବନରେ ଗଢ଼ି ଉଠିଥିଲା । ଚୀନା ସମାଜ ଅପେକ୍ଷାକୃତ ବେଶୀ ବହିର୍ମୁଖୀ ଏବଂ ଭାରତୀୟ ସମାଜ ଅପେକ୍ଷାକୃତ ବେଶୀ ଅନ୍ତର୍ମୁଖୀ । ବେଶୀ ବହିର୍ମୁଖୀ ବା ବେଶୀ ଅନ୍ତର୍ମୁଖୀ ହେବାରେ ଯେଉଁ ବିପଦ ରହିଛି, ସେ ବିଷୟରେ ଉପନିଷଦର ଋଷିମାନେ ସତର୍କ ବାଣୀ ଶୁଣାଇ ଯାଇଛନ୍ତି । ବାହାର ଦୁନିଆ ଓ ଭିତର ଦୁନିଆ ଏହି ଉଭୟ ଜଗତ ବିଷୟରେ ଯାହାର ଉପଲବ୍‌ଧି ଘଟିଛି, ସେହି ପ୍ରକୃତ ବିଦ୍ୱାନ୍ ବା ଜ୍ଞାନୀ ବୋଲି ଉପନିଷଦ କହେ ।

ଚୀନ୍ ଓ ଭାରତର ଗ୍ରାମ୍ୟ ସମାଜକୁ ବାଦ ଦେଲେ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ବି କମ୍ୟୁନିଜ୍‌ମର ବିକାଶ ଘଟିଥିଲା । ମାତ୍ର ଏହି କମ୍ୟୁନିଷ୍ଟିକ ସମାଜଗୁଡ଼ିକରେ ଚୀନା ସମାଜର ଉଦାର ହେତୁବାଦ ଓ କନ୍‌ଫ୍ୟୁସୀୟ ଭୌତିକବାଦ କିମ୍ବା ଭାରତୀୟ ସମାଜର ଉଦାର ଆଧ୍ୟାତ୍ମିକତାର ଆଧାର ନ ଥିବାରୁ ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହୋଇ ବାଧାବିଘ୍ନମାନଙ୍କୁ ସାମିଲ କରିବାର ଶକ୍ତି ସେମାନଙ୍କର ନଥିଲା, ଯେଉଁ କାରଣରୁ କି ଏହି ସମାଜ ବ୍ୟବସ୍ଥା ସେସବୁ ଅଞ୍ଚଳରେ ତିଷ୍ଠି ପାରିଲା ନାହିଁ ।

ବାଧାବିଘ୍ନ ଓ ପ୍ରତିକୂଳ ପରିସ୍ଥିତି ସବୁକୁ ନିଜ ଭିତରେ ସାମିଲ କରିଦେଇ ନିଜ ସ୍ରୋତରେ ପକାଇଦେବାର ଏକ ପ୍ରଚ୍ଛନ୍ନ ଅନ୍ତର୍ଜ୍ଞାୟୁ ଶକ୍ତି ଭାରତ ଓ ଚୀନ୍ ଉଭୟ ସମାଜର ରହିଛି । ଏହି ହେତୁରୁ ହିଁ ଭାରତ ଏବଂ ଚୀନ୍ ବାରମ୍ବାର ଶୋଇପଡ଼ି ବାରମ୍ବାର ଜାଗି-ଉଠିଛନ୍ତି ।

ଶକ, ହୁନ ଏବଂ ଆଫଗାନମାନଙ୍କର ଭାରତଆକ୍ରମଣ ପରଠୁ ଭାରତୀୟ ସମାଜର ପ୍ରବଳ ଅନୁସନ୍ଧିତ୍ସା କ୍ଷୀଣ ହୋଇଗଲା । ଧନୀ ପାଖରେ ଓ ଐଶ୍ୱର୍ଯ୍ୟଶାଳୀ ସମ୍ରାଟ ପାଖରେ ମଥାନତ ନକରିବାର ଯେଉଁ ଆତ୍ମଶକ୍ତି ବା ବ୍ରହ୍ମତେଜ ବ୍ରାହ୍ମଣ ବେଦ ଉପନିଷଦ ଯୁଗରୁ ଲାଭ କରି ଆସିଥିଲା, ଯେ ନିଜର ଜ୍ଞାନବଳରେ ସକଳ ପ୍ରକାର ତୃଷ୍ଣାକୁ ନିୟନ୍ତ୍ରିତ କରି ଏବଂ ସ୍ୱେଚ୍ଛାରେ ଦରିଦ୍ର ରହି ଐଶ୍ୱର୍ଯ୍ୟଶାଳୀ ଧନୀ ଓ ରାଜାମାନଙ୍କୁ ସମାଜର ମଙ୍ଗଳକର ମାର୍ଗରେ ଚଳାଇ-ପାରୁଥିଲା, ସେ ବର୍ତ୍ତମାନ ଧନୀ ସାମନ୍ତ ଓ ରାଜାମାନଙ୍କର ସ୍ତାବକ ହୋଇପଡ଼ିଲା । କ୍ଷମତା ଓ ଐଶ୍ୱର୍ଯ୍ୟ ପାଖରେ ମଥା ନତ ନ କରି ବଳୁଆ ବ୍ୟକ୍ତିର ଶୋଷଣ ଉତ୍ପୀଡ଼ନର ବିଷଦାନ୍ତକୁ ଭାଙ୍ଗି ଦେବାର ଯେଉଁ ସତ୍ୟ ଓ ତାର ପ୍ରୟୋଗ କୌଶଳ ଏହି ଉଦାରପୀର ବ୍ରାହ୍ମଣ-ମାନେ ଆବିଷ୍କାର କରିଥିଲେ, ପଦଲେହନକାରୀ ସ୍ୱାନବୃତ୍ତି ଧରି ସେମାନେ ସେହି ପରମ ସତ୍ୟ ପ୍ରୟୋଗକୌଶଳକୁ ଭୁଲିଗଲେ । ଏହି ସତ୍ୟକୁ ପୁଣି ମନେ ପକାଇ ଦେଇଛନ୍ତି ମହାତ୍ମାଗାନ୍ଧି ଓ ଆଚାର୍ଯ୍ୟ ବିନୋବା ଏହି ସତ୍ୟର ଫୁତ୍କାର ଦେଇଛନ୍ତି ସ୍ୱାମୀ ବିବେକାନନ୍ଦ ଓ ରବୀନ୍ଦ୍ରନାଥ ଠାକୁର । ସତ୍ୟର ଏହି ସୁଲଳିତ ବଂଶୀଧ୍ୱନିକି ଆମ କାନରେ ବାରମ୍ବାର ଫୁଙ୍କି ଦେଇ ଯାଉଛନ୍ତି, ଯେହି, ଯେ କି ନାନା ବେଶରେ ଓ ନାନା ରୂପ ଧରି ରାମ, କୃଷ୍ଣଙ୍କ ଯୁଗରୁ

ଗୋଟିକ ପରେ ଗୋଟିଏ କରି, ନିରବଚ୍ଛିନ୍ନ ଭାବରେ ଅନ୍ଙ୍କୁ ଆସି ଡାକୁଛନ୍ତି "ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ ।" ଉଠ ଉଠ, ଜାଗ୍ରତ ହୁଅ, ସତ୍ୟ ଶିବ ସୁନ୍ଦରଙ୍କର ସନ୍ଧାନରେ ଆଗକୁ ଆଗକୁ ମାଡ଼ିଯାଅ । ତୁମେ ତାଙ୍କୁ ମା'ଆ ଆନନ୍ଦମୟୀ କହିପାର; ଶ୍ରୀମା ଓ ଶ୍ରୀ ଅରବିନ୍ଦ କହିପାର । ଠାକୁର ନିଗମାନନ୍ଦ ବା ଠାକୁର ଅନୁକୂଳଚନ୍ଦ୍ର କହିପାର । ତାଙ୍କୁ-ସତ୍ୟସାଇ ବାବା କହିପାର ; କିଛି ଯାଏ ଆସେ ନାହିଁ । ସେ ଏକ ହୋଇ ବି ଅନେକ ରୂପ ଧରନ୍ତି । ସେ ଅରୂପ ହୋଇ ବି ବିଶ୍ୱରୂପ ସାଜିଛନ୍ତି । ସେ ଶରଚେତନ ଓ ଅବ୍ୟକ୍ତ ହୋଇ ମଧ୍ୟ କାଷ୍ଠ ପାଷାଣ, ତରୁ ତୃଣ, କୀଟ ପତଙ୍ଗ, ପଶୁ ପକ୍ଷୀ ମଣିଷ ଚନ୍ଦ୍ର ସୂର୍ଯ୍ୟ ଗ୍ରହତାରାଦି ଜଡ଼, ଚେତନ ଓ ଅର୍ଦ୍ଧଚେତନାଦି ସବୁ ରୂପ ଧରି ଆମରି ଆଖିଆଗରେ ଖେଳୁଛନ୍ତି । ସେହି ପିତା ମାତା ସ୍ୱାମୀ ସ୍ତ୍ରୀ ପୁତ୍ର କନ୍ୟା ପଡ଼ୋଶୀ ଧନୀ ନିର୍ଦ୍ଧନ, ରଜା ପ୍ରଜା, କଳା ଗୋରା ପ୍ରଭୃତି ରୂପ ଧରି ଏକ ମସ୍ତବଡ଼ ମଜାର ଖେଳ ଖେଳି-ଯାଉଛନ୍ତି ।

..........

# ପଞ୍ଚମ ଅଧ୍ୟାୟ

## ଇତିହାସର ପୁନରାବୃତ୍ତି

ମନୁଷ୍ୟର ଶୈଶବ, ଯୌବନ, ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ଏହି ଚାରୋଟି ଅବସ୍ଥା ଗୋଟିକ ପରେ ଗୋଟିଏ ଆସିବା ପରେ ମନୁଷ୍ୟ-ଜାତିର ବା ସମାଜର ତତ୍ତୁଲ୍ୟ ଅବସ୍ଥା ଚାରୋଟିର କ୍ରମପରିଣତି ଘଟେ । କେବଳ ପ୍ରଭେଦ ଏତିକି ଯେ ବ୍ୟକ୍ତିର ବାର୍ଦ୍ଧକ୍ୟ ପରେ ତାର ଦେହାବସାନ ହୁଏ । ସମାଜର ବାର୍ଦ୍ଧକ୍ୟ ପରେ ତାର ନବୀକରଣ ଘଟେ । ସମାଜର ପୁଣି ଶୈଶବ ଆସେ, ଯାହାକି ପୂର୍ବବର୍ତ୍ତୀ ଶୈଶବଠାରୁ ଅଧିକତର ଉନ୍ନତ ହୁଏ । ମାର୍କସଙ୍କ ସିଦ୍ଧାନ୍ତ ଅନୁସାରେ ନିମ୍ନଲିଖିତ ଚାରୋଟି ଅବସ୍ଥାର କ୍ରମପରିଣତି ଘଟେ, ଯଥା —(୧) କମ୍ୟୁନିଷ୍ଟିକ ସମାଜ, (୨) ଦାସ ଯୁଗର ସମାଜ, (୩) ସାମନ୍ତ ଯୁଗର ସମାଜ (୪) ପୁଞ୍ଜିବାଦୀ ସମାଜ । ମାର୍କସଙ୍କ ମତରେ ପୁଞ୍ଜିବାଦୀ ସମାଜର ପୂର୍ଣ୍ଣ ପରିଣତିରୁ ପୁଣି ସାମ୍ୟବାଦୀ ସମାଜରେ ପୂର୍ବବର୍ତ୍ତୀ ସମାଜର ରୂପାନ୍ତର ଘଟେ, ଯାହା ଆଦିମ ସାମ୍ୟବାଦୀ ସମାଜଠାରୁ ଅଧିକତର ମାର୍ଜିତ ଓ ବୈଜ୍ଞାନିକ ହୁଏ । ମାର୍କସ ପାଶ୍ଚାତ୍ୟ ସମାଜର ଏବଂ ଉନ୍ନତ ପୁଞ୍ଜିବାଦୀ ସମାଜର ବାସିନ୍ଦା ଥିଲେ । ଚୀନା ବା ଭାରତୀୟ ସମାଜରେ ପୁଞ୍ଜିବାଦର ବିଶେଷ ବିକାଶ ଆଜି ବି ଘଟିନାହିଁ । ପୁଣି ସାମନ୍ତବାଦୀ

ସମାଜ ବି ଭାରତ ବା ଚୀନ୍‌ର ଗ୍ରାମ୍ୟସମାଜରେ ଗଢ଼ି ଉଠିନି । ପୁଣି ତଥାକଥିତ ଦାସଯୁଗର ସମାଜ ଜୀବନ ଭାରତର ଗ୍ରାମ୍ୟ ସମାଜରେ ଗଢ଼ି ଉଠିନାହିଁ କାରଣ ଗ୍ରାମ୍ୟ ଜୀବନର ଢାଞ୍ଚା ବା ଫ୍ରେମ୍‌ଟି ଭାରତରେ ଯୁଗ ଯୁଗରୁ ଏକାପରି ରହିଆସିଛି । ଏଣୁ ଭାରତର ଗ୍ରାମ୍ୟ ସମାଜକୁ ମୁଁ ମାର୍କସୀୟ ଶୈଳୀରେ ବିଶ୍ଳେଷଣ ନ କରି ଅନ୍ୟ ଏକ ଶୈଳୀରେ ବିଶ୍ଳେଷଣ କରୁଛି । ଜ୍ଞାନୀ ପାଠକପାଠିକାମାନେ ଏଥିପାଇଁ ମୋତେ କ୍ଷମା କରିବେ । ମୁଁ ଆଗରୁ କହିଛି, ମଣିଷର ବାଲ୍ୟଯୌବନାଦି ଚୃର୍ଯୋଟି ଅବସ୍ଥା ପରି ମଣିଷସମାଜର ବି ଚୃର୍ଯୋଟି ଅବସ୍ଥା ଆସେ । ମାତ୍ର ଜାତିର ବାର୍ଦ୍ଧକ୍ୟ ଆସିଗଲେ, ତାର ନବୀକରଣ ଘଟେ । ବିନମ୍ର ମତରେ ଏହି ଉକ୍ତିଟି ଚୀନ ଓ ଭାରତର ଗ୍ରାମ୍ୟ ସମାଜ ପ୍ରତି ପ୍ରଯୁଜ୍ୟ । ଗ୍ରୀକ୍ ଓ ରୋମର ନଗର ପ୍ରଧାନସଭ୍ୟତାର ପତନ ଘଟିଛି । ମାତ୍ର ବେଦ ଉପନିଷଦର ମୌଳିକ ବିଶିଷ୍ଟତାଟି ଅଦ୍ୟାପି ଭାରତର ଧୂଳିମାଟିର ଗ୍ରାମ୍ୟ ସମାଜରେ ରହିପାରିଛି । କନ୍‌ଫୁସିୟସ୍, ଲାଓତ୍ସେ, ବୁଦ୍ଧ, ଯିଶୁ ଓ ମହମ୍ମଦଙ୍କୁ ଚୀନାର ଗ୍ରାମ୍ୟସମାଜ ଅଦ୍ୟାପି ଭୁଲିନାହିଁ ।

ଭାରତୀୟ ସମାଜକୁ ଆଖି ଆଗରେ ରଖି କହିବାକୁ ଚାହୁଁଛି । ସମାଜର ବା ଜାତିର ଏହି ଚୃର୍ଯୋଟି ଅବସ୍ଥାର ସ୍ତର ହେଉଛି—
(୧) ଆହାର-ବିହାର-ନିଦ୍ରାମୂଳକ ଶୈଶବର ସ୍ତର ବା ଶୂଦ୍ରଯୁଗ ।
(୨) ସଞ୍ଚୟ, ସଂଗ୍ରହ, ତୃଷ୍ଣାମୂଳକ ଯୌବନର ସ୍ତର ବା ବୈଶ୍ୟଯୁଗ ।
(୩) କ୍ଷମତା-ଶକ୍ତି-ତୃଷ୍ଣା ମୂଳକ ପ୍ରୌଢ଼ତ୍ୱର ସ୍ତର ବା କ୍ଷତ୍ରିୟ ଯୁଗ ।
(୪) ଅନୁସନ୍ଧିତ୍ସା-ବୈରାଗ୍ୟମୂଳକ ବାର୍ଦ୍ଧକ୍ୟର ସ୍ତର ବା ବ୍ରାହ୍ମଣଯୁଗ ।

ଶୈଶବରେ ଶିଶୁ ଖେଳେ, ଶୁଏ ଓ ଖାଏ । ଯୌବନରେ ଧନ ସଞ୍ଚୟ କରେ, ସଂଗ୍ରହ କରେ । ପ୍ରୌଢ଼ାବସ୍ଥାରେ ନିଜର ପ୍ରଭ

କନ୍ୟାଙ୍କ ଉପରେ କ୍ଷମତା ବିସ୍ତାର କରେ; ସେମାନଙ୍କୁ ଶାସନ କରେ । ବୃଦ୍ଧାବସ୍ଥାରେ ସେ ଏହି କର୍ମ ଓ ଜଞ୍ଜାଳରୁ ନିଜକୁ ମୁକ୍ତ କରିନିଏ; ସେ ଆଗାମୀ ମୃତ୍ୟୁ ଚିନ୍ତାରେ ଶଙ୍କିତ ହୁଏ; ତାର ମନରେ ବୈରାଗ୍ୟ ଆସେ । ସେ ଚିନ୍ତା କରେ, ନିଜକୁ ପ୍ରଶ୍ନ କରେ "ମଣିଷ ଜନ୍ମୁଛି କାହିଁକି ? ମରୁଛି କାହିଁକି ? ମଣିଷ ଆସୁଛି କେଉଁଠୁ ? ଯାଉଛି କୁଆଡ଼େ" ଇତ୍ୟାଦି ଏହି ସବୁ ଚିନ୍ତନ, ଧ୍ୟାନରୁ ସେ କିଛି ସତ୍ୟର ସନ୍ଧାନ ପାଏ, ଏ ବିଷୟରେ କିଛି ଅନୁଭୂତ କରେ । ଏହିସବୁ ଅନୁଭୂତିମାନଙ୍କୁ ସେ ତାର ବଂଶଧରମାନଙ୍କୁ ଦେଇଯାଏ । ତାର ପୁଅମାନଙ୍କର ବାର୍ଦ୍ଧକ୍ୟାବସ୍ଥାରେ ସେମାନେ ବି ମୃତ ପିତାଙ୍କ ପରି ଚିନ୍ତନ ଧ୍ୟାନ କରି ଅଧିକା କିଛି ସତ୍ୟର ଖୋଜ କରନ୍ତି । ପିତୃଦତ୍ତ ଅନୁଭୂତି ସଙ୍ଗେ ନିଜ ନିଜ ଅନୁଭୂତିମାନଙ୍କୁ ମିଳାନ୍ତି ଏବଂ ଏହି ଅନୁଭୂତିମାନଙ୍କର ସମନ୍ୱୟ ଓ ମିଳନ ଘଟାନ୍ତି । ଏହିପରି ଯୁଗ ଯୁଗ ସଞ୍ଚିତ ଅନୁଭୂତିମାନଙ୍କୁ ଶୁଣି ଶୁଣି ବଂଶ ପରଂପରାକ୍ରମେ ମନରେ ସଞ୍ଚିତ ସଞ୍ଚିତ କରାଯାଏ । ଏହା ଶୁଣି ଶୁଣି ମନେ ରଖୁଥିବା ଅନୁଭୂତି ହିଁ ଶ୍ରୁତି ବା ବେଦ ନାମ ଧାରଣ କରେ । ବେଦ ବା ଶ୍ରୁତି ଅପୌରୁଷେୟ । ଏହା କୌଣସି ବ୍ୟକ୍ତି ବିଶେଷର ଅନୁଭୂତିରୁ ଆସିନାହିଁ ।

ଅତୀତ ଯୁଗରୁ ଭାରତୀୟ ସମାଜର ଚିତ୍ରକୁ ମୋର କଳ୍ପନା-ଚକ୍ଷୁରେ ମୁଁ ଯେପରି ଦେଖିବାକୁ ପାଉଛି, ସେହି ଦୃଷ୍ଟିଭଙ୍ଗିରୁ ମୁଁ ଏହି ସିଦ୍ଧାନ୍ତଟିକୁ ବାଢ଼ୁଛି ଯେ ଭାରତ ଓ ଚୀନା ସମାଜର ଏହି ଅବନ୍ଧ ଚତୁଷ୍ଟୟର ଅବ୍ୟାହତ ଓ କ୍ଷିପ୍ର ପରିଣତି ଅତୀତ ଯୁଗରେ ବିଶେଷ ଅନୁକୂଳ ପରିସ୍ଥିତିରୁ ଘଟିଯାଇଥିଲା, ଯେଉଁ ଅନୁକୂଳ ବାତାବରଣ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ବ୍ୟାହତ ହୋଇଛି । ପୁନଶ୍ଚ ଭାରତ ସମାଜ ତାର ଅତୀତ ଯୁଗର ଅନୁଭୂତିମାନଙ୍କୁ ବଂଶପରଂପରାକ୍ରମେ

ଶୁଣି ଶୁଣି ମନେ ରଖିଛୁ, ଯାହାକି ଅନ୍ୟ ସମାଜରେ ଘଟିନାହିଁ । ଅବଶ୍ୟ କାହାଣୀ ଆଖ୍ୟାୟିକା ଆକାରରେ ପ୍ରତ୍ୟେକ ସମାଜରେ ତାର ଅଜ୍ଞାତ ଯୁଗର ଅନୁଭୂତ ନିଦର୍ଶନ ରହିଛି । ମାତ୍ର ଏହିସବୁ କାହାଣୀ ବା ରୂପକରେ ସତ୍ୟ ଦର୍ଶନର ସେହି ନିଖୁଣତା ନାହିଁ, ଯାହାକି ବେଦ ଓ ବେଦର ଶେଷ ସିଦ୍ଧାନ୍ତ ଉପନିଷଦରେ ରହିଛି । ଏହି ବେଦ ଓ ବେଦାନ୍ତହିଁ ଭାରତୀୟ ସମାଜର ପ୍ରବୁଦ୍ଧ ଆତ୍ମଶକ୍ତିକୁ ମୃତ୍ୟୁଞ୍ଜୟୀ କରି ରଖିଛି । ମାତ୍ର ପ୍ରଶ୍ନ ଉଠିପାରେ ଚୀନାସମାଜର ତ ବେଦ ବେଦାନ୍ତ ନାହିଁ, ସେହି ସମାଜ ବି କାଳଜୟୀ ହୋଇ ବଞ୍ଚିଛି କିପରି ? ଅଥଚ ପ୍ରାଚୀନତମ ମିସର ସଭ୍ୟତା ଗଲା କୁଆଡ଼େ ? ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ ଉଭୟ ଭାରତୀୟ ସମାଜ ଓ ଚୀନା ସମାଜରେ ଅତି ଅଜ୍ଞାତ ଯୁଗରେ ବିଶେଷ ଅନୁକୂଳ ପରିସ୍ଥିତିରେ ପରିଣତ ଅବସ୍ଥାଟି ଅର୍ଥାତ୍ ଚିନ୍ତନ, ଧ୍ୟାନ, ମନନ ଓ ଜିଜ୍ଞାସା କରିବା ଅବସ୍ଥାଟି ଆସିଯାଇଛି, ଯେଉଁ ପରିପକ୍ୱ ଅବସ୍ଥାଟି ମିସର, ମେସୋପୋଟାମିଆ ବା ଅନ୍ୟ ସମାଜରେ ଆସିପାରିନାହିଁ । କର୍ମର ଜଞ୍ଜାଳ ଓ କ୍ଷୁଧିକରୁ ମୁକ୍ତ ନ ହେବାଯାଏ କେହି ଅନୁଧ୍ୟାନ ଓ ଗଭୀର ଚିନ୍ତନ ପାଇଁ ଆଗ୍ରହୀ ଆସେନାହିଁ । ଚୀନା ସମାଜର ମୂଳରୁ ହିଁ ଅର୍ଥାତ୍ ତାର ପରିପକ୍ୱ ଅବସ୍ଥାରୁ ହିଁ ଆସିଯାଇଛି ପ୍ରଖର ହେତୁବାଦ (Rationality) ସହନଶୀଳ ଉଦାରତା, ସତ୍ୟ ଜାଣିବାକୁ ପ୍ରବଳ ଜିଜ୍ଞାସା । ଚୀନା-ସମାଜର ଆଧ୍ୟାତ୍ମିକ ଅନୁଭୂତି ଭାରତଠାରୁ ଅପେକ୍ଷାକୃତ ଗଭୀର କମ ହେଲେ ବି ଚୀନାସମାଜର ଭିତ୍ତିଭୂମି ହୋଇଛି ତାହାର ବାସ୍ତବବାଦୀ ନୈତିକତା । ଭାରତର ଜ୍ଞାନୀ ଲୋକେ ସମାଜକୁ ଡରି ଗୁମ୍ଫାକୁ ଓ ବଣକୁ ପଳାନ୍ତି ; ଚୀନାର ଜ୍ଞାନୀ ମାଣ୍ଡାରିନ୍ ସମାଜରୁ ଦୂରେଇ ଯାଆନ୍ତିନାହିଁ । ସେ ସମାଜରେ ରହି ସମାଜକୁ ସୁଧାରିବାରେ ଲାଗିପଡ଼ ଭାରତୀୟ ସମାଜକୁ ଏକ ସର୍ବତ୍ୟାଗୀ କର୍ମମୁକ୍ତ ସନ୍ନ୍ୟାସୀ ସହିତ

ତୁଳନା କଲେ ଶିନ ସମାଜକୁ ମୁଁ ଏକ ଅନାସକ୍ତ କର୍ମକୁଶଳୀ ଯୋଗୀ ସଙ୍ଗରେ ତୁଳନା କରିବ, ଯେ କି ସବୁ କାମ କରୁଛି, କିନ୍ତୁ କାହିଁରେ ଲିପ୍ତ ହେଉନାହିଁ । ହେଟରୁଚୀ ମୁଦ୍ରାର ଯୋଡ଼ିଏ ପଟକୁ ଭାରତ ଆବିଷ୍କାର କରିଥିଲେ ବି ସେ ଗୋଟିଏ ପଟକୁ ବେଶୀ ଆଉଜି ପଡ଼ିଛି । ଶିନ କେବଳ ଗୋଟିଏ ପଟକୁ ଆବିଷ୍କାର କରି ସେଥିପାଇଁ ହିଁ ତନ୍ମୟ ରହିଛି, ଅଥଚ ... ସେ ... କରୁନାହିଁ । ସତ୍ୟର ଗୋଟିଏ ପାଖ ହେଲା ଏହି ବାହାର ଜଗତ, ଏହି ଦୃଶ୍ୟମାନ ଜଗତ, ଯାହାର କି ପ୍ରତି ମୂହୂର୍ତ୍ତରେ ପରିବର୍ତ୍ତନ ଘଟି-ଯାଉଛି । ଏଣୁ ତାହା ପରିବର୍ତ୍ତନଶୀଳ ବା ନଶ୍ୱର ଅଟେ । ଉପନିଷଦର ଋଷି ଏହି ଗତିଶୀଳ ଜଗତକୁ ଅବିଦ୍ୟାର ଜଗତ କହେ ; ଯେଣୁ ଏହି ଜଗତର ଶିର ବିଦ୍ୟାମାନତା ନାହିଁ ।

ସତ୍ୟର ଅପର ପଟଟି ହେଲା ଅନ୍ତର୍ଜଗତ ବା ଏହି ପରିଦୃଶ୍ୟମାନ ଜଗତର ଅନ୍ତରାଳରେ ଥିବା ସତ୍ତାର ଜଗତ, ଯାହା ଅପରିବର୍ତ୍ତମୟ ଓ ଅକ୍ଷୟ । ଉପନିଷଦ ବା ବେଦର ଶେଷ ସିଦ୍ଧାନ୍ତ, ଏହି ଅନ୍ତର ଜଗତକୁ ବିଦ୍ୟାର ଜଗତ କହେ । ବିଦ୍ୟା ଓ ଅବିଦ୍ୟା ଉଭୟକୁ ଜାଣିବା ଦ୍ୱାରା ହିଁ ବ୍ୟକ୍ତି ବା ଜାତିର ପୂର୍ଣ୍ଣତା ଘଟେ ।

"ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ତ୍ୱା ବିଦ୍ୟୟା ମୃତ ମଶ୍ନୁତେ" । ଅବିଦ୍ୟାର ଜଗତକୁ ଜଡ଼ବିଜ୍ଞାନ ସାହାଯ୍ୟରେ ଜାଣି ଏବଂ ବିଦ୍ୟାର ଜଗତକୁ ଆତ୍ମଜ୍ଞାନ ବଳରେ ଉପଲବ୍ଧି କରି ବ୍ୟକ୍ତି ବା ଜାତି ମୃତ୍ୟୁକୁ ଜିଣେ ଏବଂ ଅମୃତତ୍ୱର ଅଧିକାରୀ ହୁଏ । ଭାରତସମାଜ ଉପନିଷଦ ଯୁଗରୁ ସତ୍ୟର ଏହି ଉଭୟ ପଟକୁ ଆବିଷ୍କାର କରିଛି ମାତ୍ର ଦୁର୍ଭାଗ୍ୟରୁ ସେ ଉପନିଷଦର ସତର୍କ ବାଣୀକୁ ଭୁଲି କେବଳ ଅନ୍ତର ଜଗତକୁ ଏକମାତ୍ର ସତ୍ୟ ବୋଲି ମାନିନେଇ ନାନା ବିଡ଼ମ୍ବନାରେ ପଡ଼ୁଛି, ଯଦିଚ

ସେ ସବୁର ଅପଚେଷ୍ଟାକୁ ପ୍ରତ୍ୟାଖ୍ୟାନ କରିନାହିଁ ତଥାପି ଏହାକୁ ଗୁରୁତ୍ୱ ଦେବାରେ ଗୌତମ ବୁଦ୍ଧଙ୍କ ବେଳରୁ ଅବହେଳା କରିଆସୁଛି ବୋଲି ଯୋଗୀ ଅରବିନ୍ଦଙ୍କ ଅଭିମତ ।

ମାନବ ସମାଜକୁ ପ୍ରାଗୈତିହାସିକ ଯୁଗରୁ ଆଜି ପର୍ଯ୍ୟନ୍ତ ଏକ ବା ଅବିଭାଜ୍ୟ ବୋଲି ଧରିନେଇ ମୁଁ ବର୍ତ୍ତମାନ ତାର ଗୁଟିଏ ଅବସ୍ଥା ବା ସ୍ତରର କଥା ଉପସ୍ଥାପନ କରୁଛି ।

୧—ପ୍ରାଗୈତିହାସିକ ଯୁଗରୁ ୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମନୁଷ୍ୟ ସମାଜର ଶୈଶବସ୍ତର ବା ଶୂଦ୍ରଯୁଗ ଥିଲା ।

୨—ଷଷ୍ଠ ଶତାବ୍ଦୀରୁ ଆଜିପର୍ଯ୍ୟନ୍ତ ମନୁଷ୍ୟ ସମାଜର ଯୌବନ ସ୍ତର ବା ବୈଶ୍ୟଯୁଗ ଚାଲିଛି ।

ପ୍ରାଗୈତିହାସିକ ଯୁଗରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ସମୟକୁ ମୁଁ ଆହାରବିହାର ନିଦ୍ରାତୃଷ୍ଣାର ଯୁଗ ବୋଲି ଧରିନେଇଛି ; ଏହାକୁ ନିମ୍ନଲିଖିତ ଗୁଟିଏ ଉପବିଭାଗରେ ବିଭକ୍ତ କରୁଛି ।

(୧) ପ୍ରାଗୈତିହାସିକ ଯୁଗରୁ ନୂତନ ପ୍ରସ୍ତର ଯୁଗ ପର୍ଯ୍ୟନ୍ତ—ଫଳମୂଳ ଆହରଣର ଯୁଗ ।

(୨) ନୂତନ ପ୍ରସ୍ତର ଯୁଗକୁ କୃଷିର ଯୁଗ ବା ସଂଚୟ ସଂଗ୍ରହର ଯୁଗ କୁହାଯାଇପାରେ । ସମାଜର ଏହି ଯୁଗକୁ ଧନ ତୃଷ୍ଣାର ଯୁଗ ବା ପ୍ରୌଢ଼ାବସ୍ଥା କୁହାଯାଇପାରେ । ଏହି ନୂତନପ୍ରସ୍ତର ଯୁଗର ଚରମ ବିକଶିତ ଅବସ୍ଥାଟି ଖ୍ରୀଷ୍ଟପୂର୍ବ ୦୦୦୦ ବର୍ଷ ପର୍ଯ୍ୟନ୍ତ ଥିଲା ବୋଲି ଅନୁମାନ ।

(୩) ଖ୍ରୀଷ୍ଟପୂର୍ବ ୪୦୦୦ ଠାରୁ ଅର୍ଥାତ୍ ଆର୍ଯ୍ୟଜାତିର ଅଭ୍ୟୁଦୟରୁ ମନୁଷ୍ୟ ସମାଜ ଅନ୍ୟ ଏକ ସ୍ତର ବା ଯୁଗରେ ପ୍ରବେଶ କଲା, ଯାହାକୁ

କ୍ଷମତା ତୃଷ୍ଣାର ଯୁଗ ବୋଲି ନାମ ଦିଆଯାଇପାରେ । ଏହି କାଳର ସମାଜକୁ ବ୍ୟକ୍ତିର ପ୍ରୌଢ଼ତ୍ୱ ସଙ୍ଗେ ତୁଳନା କରଯାଇପାରେ ।

(୪) ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀରୁ ମନୁଷ୍ୟ ସମାଜ ତାର ଶେଷ ଅବସ୍ଥା ବା ବାର୍ଦ୍ଧକ୍ୟରେ ପ୍ରବେଶ କଲା । ଖ୍ରୀ. ପୂ. ୬୦୦ରୁ ଖ୍ରୀଷ୍ଟାବ୍ଦ ୬୦୦କୁ ମୁଁ କେହ୍ରିଙ୍କ ଭାଷାରେ ଅନୁସନ୍ଧିତ୍ସାର ଯୁଗ ବୋଲି କହିବାକୁ ଚାହେଁ । ମୋ ଭାଷାରେ ମୁଁ ଏହାକୁ ବ୍ରାହ୍ମଣ ଯୁଗ ବି କହିବି ।

ତାହା ହେଲେ ପ୍ରାଗୈତିହାସିକ ଯୁଗରୁ ଷଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଯୁଗଟିକୁ ବିଚାର କଲେ ଆପଣ ଦେଖିବେ ଯେ ୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମାନବ ସମାଜ ଚାରୋଟି ସ୍ତର ବା ଅବସ୍ଥା ଦେଇ ଗତି କରିଛି । ନୂତନ ପ୍ରସ୍ତର ଯୁଗର ଆରମ୍ଭ ପର୍ଯ୍ୟନ୍ତ ସମାଜର କୌଣସି ବୈଶିଷ୍ଟ୍ୟ ଦେଖିବାକୁ ପାଇବେ । ପୁଣି ନୂତନ ପ୍ରସ୍ତର ଯୁଗରୁ ଖ୍ରୀ. ପୂ. ୪୦୦୦ ପର୍ଯ୍ୟନ୍ତ ଏହି ସମାଜର ଅନ୍ୟ ଏକ ବୈଶିଷ୍ଟ୍ୟ ଦେଖିବେ । ପୁରାତନ ପ୍ରସ୍ତର ଯୁଗଟିରେ ଲୋକେ ଫଳମୂଳ ଆହରଣ କରୁଥିଲେ, ଶିକାର କରି ଚଳୁଥିଲେ; ବାଣ୍ଟି କୁଣ୍ଡି ଖାଉଥିଲେ । ମାତ୍ର ନୂତନ ପ୍ରସ୍ତର ଯୁଗରେ ବାଣ୍ଟି କୁଣ୍ଡି ଖାଇବାଟା କମିଗଲା । ଲୋକଙ୍କର ସଂଗ୍ରହତୃଷ୍ଣା ଜାଗି ଉଠିଲା । ପୁଣି ଖ୍ରୀ. ପୂ. ୪୦୦୦ ରୁ ଖ୍ରୀ: ପୂ: ୬୦୦ ପର୍ଯ୍ୟନ୍ତ ସଂଗ୍ରହ ଯଶସ୍ପୃହା ତୃଷ୍ଣାରୁ ସଂଘର୍ଷ ତୃଷ୍ଣା ବା କ୍ଷମତା ତୃଷ୍ଣା ମଥା ଟେକିଲା । ଖ୍ରୀ: ପୂ: ୬୦୦ରୁ ଖ୍ରୀଷ୍ଟାବ୍ଦ ୬୦୦ ମଧ୍ୟରେ ସମାଜ ଆଉ ଏକ ବୈଶିଷ୍ଟ୍ୟ ଗୁଣର ଅଧିକାରୀ ହେଲା; ଯେ ସଂଗ୍ରହ ତୃଷ୍ଣା, ଯଶସ୍ପୃ ତୃଷ୍ଣା ଓ କ୍ଷମତା ତୃଷ୍ଣା ପ୍ରଭୃତିକ ସମାଜର କଲ୍ୟାଣ କାମନାରେ ରୂପାନ୍ତର କରିବାକୁ ବାଟ ଖୋଜିଲା ।

ପ୍ରାଗୈତିହାସିକ ଯୁଗରୁ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ମଣିଷ ସମାଜର ଗୋଟିଏ ବିଶିଷ୍ଟ ଯୁଗର ଅବସାନ ଘଟିଲା । ତାର ଶୈଶବ ବା ଶୁଦ୍ରତ୍ୱର ଅବସାନ ହେଲା । ସମାଜ ବର୍ତ୍ତମାନ ଯୌବନରେ ବା ବୈଶ୍ୟ ଯୁଗରେ ପଦାର୍ପଣ କରି ଚାଲିଛି । ଏହି ଯୁଗକୁ ମୁଁ ଅର୍ଥକୃଷ୍ଣା ସଂଗ୍ରହ ସମ୍ପୃକ୍ତ ତୃଷ୍ଣାର ଯୁଗ ବୋଲି କହୁଛି । ଏହି ଯୁଗଟିକୁ ବି ମୁଁ ନିମ୍ନଲିଖିତ ଚାରିଟି ଉପବିଭାଗରେ ବିଭକ୍ତ କରୁଛି ।

(୧) ଷଷ୍ଠ ଶତାବ୍ଦୀରୁ ୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବା କଲମ୍ବସଙ୍କ ଦ୍ୱାରା ଆମେରିକା ଆବିଷ୍କାର ପର୍ଯ୍ୟନ୍ତ, ଏହି ୯୦୦ ବର୍ଷକୁ ମୁଁ କ୍ଷୁଦ୍ର ସ୍ତରର ପୁନରାବୃତ୍ତି ବୋଲି କହୁଛି । ଲକ୍ଷ୍ୟ କରିବାର କଥା, ପୂର୍ବବର୍ତ୍ତୀ ଶିଶୁସ୍ତରଠାରୁ ଏହା ବହୁଗୁଣରେ ଉନ୍ନତତର ହୋଇଛି । ପ୍ରବଳ ଆଗ୍ରହ, କର୍ମତତ୍ପରତା ଓ ଅନୁସନ୍ଧିତ୍ସାରେ ମନୁଷ୍ୟର ଅବସାଦ ଆସିଗଲା ପରି, ଏହି ୯୦୦ ବର୍ଷକୁ ଅବସାଦ ଓ ନିଦ୍ରାର ଯୁଗ କୁହାଯାଇପାରେ ।

(୨) ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୯୦୦ ଖ୍ରୀଷ୍ଟାବ୍ଦ ଏହି ଚାରିଶହ ବର୍ଷକୁ ଉତ୍କଟତମ ସଂଗ୍ରହତୃଷ୍ଣା ଓ ସଂଗ୍ରହତୃଷ୍ଣାର ନାମ ଦିଆଯାଇପାରେ । ମନୁଷ୍ୟ ସମାଜ ତାର ନିଦ୍ରାକୁ, ଶୈଶବକୁ ତେଜି ପୁନର୍ବାର ଯୌବନରେ ପଦାର୍ପଣ କଲା । ନୂତନ ସ୍ତରର ଯୁଗର ଯୌବନଠାରୁ, ପ୍ରାଥମିକ କୃଷି ସମାଜର ଯୌବନଠାରୁ ସମାଜର ଏହି ପୁନରାବୃତ୍ତ ଯୌବନ ଅଧିକତର ମାର୍ଜିତ ଓ ଉନ୍ନତ ।

(୩) ଖ୍ରୀଷ୍ଟାବ୍ଦ ୧୯୦୦ରୁ ୧୯୫୦ ଏହି ୫୦ଟି ବର୍ଷ ମାତ୍ରକୁ ମୁଁ ଦ୍ୱିତୀୟ ଥର ମନୁଷ୍ୟ ସମାଜର ପ୍ରୌଢ଼ତ୍ୱର ପୁନରାବୃତ୍ତି ଯୁଗ କହିବି । ମନୁଷ୍ୟ ସମାଜରେ ଖ୍ରୀ: ପୂ: ୪୦୦୦ରୁ ଖ୍ରୀ: ପୂ: ୬୦୦

ପର୍ଯ୍ୟନ୍ତ ଯେଉଁ ସବୁ କ୍ଷମତାତୃଷ୍ଣା ଓ କର୍ତ୍ତୃପିପାସା ଦେଖାଦେଇଥିଲା ସେହି ତୃଷ୍ଣା ଅଧିକତର ବିକଶିତ ଓ ଉନ୍ନତ ଭାବରେ ଏହି ୫୦ ବର୍ଷରେ ଦେଖାଦେଇ ପୃଥିବୀବକ୍ଷରେ ଏକ ପ୍ରଳୟଙ୍କରୀ ଧ୍ୱଂସର ବାତ୍ୟା ବୁହାଇଦେଇ ଅପସରିଯାଇଛି ।

(୪) ଖ୍ରୀଷ୍ଟାବ୍ଦ ୧୯୫୦ରୁ ଆଜି ପର୍ଯ୍ୟନ୍ତ ଏହି ୨୫ଟି ବର୍ଷ ମଧ୍ୟରେ ସମାଜ ପୁଣି ତାର ପରପକ୍ୱ ବାର୍ଦ୍ଧକ୍ୟାବସ୍ଥାରେ ବା ଅନୁଭୂତି ଅନୁସନ୍ଧାନର ଯୁଗରେ ପାଦ ଦେଇଛି । ଖ୍ରୀ: ପୂ: ୬୦୦ରୁ ୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମାଜର ଯେଉଁ ଜିଜ୍ଞାସୁ ମନୋବୃତ୍ତି ଦେଖା ଦେଇଥିଲା ସେହି ଜିଜ୍ଞାସାର ଏକ ଉନ୍ନତତର ମାନ ଅଧିକତର ପରିମାର୍ଜିତ ସଂସ୍କରଣ ଯୁଗରେ ସମଗ୍ର ମାନବଜାତି ବର୍ତ୍ତମାନ ପ୍ରବେଶ କରିଛି ।

ମହାମତି ପ୍ଲାଟୋ ବ୍ୟକ୍ତିକୁ, ତଥା ସମାଜକୁ ନିମ୍ନଲିଖିତ ସ୍ତରମାନଙ୍କୁ ଅନ୍ୟ ଏକ ଦୃଷ୍ଟିଭଙ୍ଗିରୁ ବୁଝାଇଛନ୍ତି, ଯଥା:—

(୧) ଜଡ଼ତ୍ୱର ଅବସ୍ଥା ବା ସ୍ତର (ଯାହାକୁ ମୁଁ କର୍ମୀଙ୍କ ବା ଶୂଦ୍ରତ୍ୱ ବୋଲି କହୁଛି ।)

(୨) ସଞ୍ଚୟ କରିବା ବା ସଂଗ୍ରହ କରିବାର ତୃଷ୍ଣାର ସ୍ତର (ବା ବୈଶ୍ୟର ସ୍ତର)

(୩) ସାହସୀର ସ୍ତର (ବା କ୍ଷତ୍ରିୟର ସ୍ତର )

(୪) ଜିଜ୍ଞାସୁର ସ୍ତର (ବା ବ୍ରାହ୍ମଣର ସ୍ତର)

ପ୍ଲାଟୋ ତାଙ୍କର ଅମର କୃତି, ରିପବ୍ଲିକ ଗ୍ରନ୍ଥରେ ଦର୍ଶାଇଛନ୍ତି ଯାହାର ସାରମର୍ମ ହେଉଛି:—

ଆହାର ବିହାର ନିଦ୍ରା ମୈଥୁନ ତୃଷ୍ଣା, ଧନ ତୃଷ୍ଣା, କ୍ଷମତା ତୃଷ୍ଣା ପ୍ରଭୃତି ଅବାଧ ଇନ୍ଦ୍ରିୟ ତର୍ପଣ ବ୍ୟକ୍ତି ତଥା ସମାଜ ଜୀବନର ଲକ୍ଷ୍ୟ ହୋଇବସିଲେ ଗଣତନ୍ତ୍ର ଓ ସମାଜବାଦ ଉଭୟଙ୍କର ଏକକାଳୀନ ପ୍ରତିଷ୍ଠା ସମାଜରେ ସମ୍ଭବ ନୁହେଁ । ବ୍ୟକ୍ତିଗତ ଓ ସାମାଜିକ ଜୀବନର ଲକ୍ଷ୍ୟ ଆତ୍ମୋପଲବ୍ଧି ହେଲେ ହିଁ ଉଭୟ ଗଣତନ୍ତ୍ର ଓ ସମାଜବାଦର ସହାବସ୍ଥାନ ସମ୍ଭବପର ।

ସମାଜର ବହୁସଂଖ୍ୟକ ଜଡ଼ତାର ସ୍ତରରେ ଥାଆନ୍ତି । ଅଳ୍ପ କେତେକ ବ୍ୟକ୍ତି ହୁଏତ ସଞ୍ଚୟ ସଂଗ୍ରହ ତୃଷ୍ଣାର ସ୍ତରରେ କିମ୍ବା କ୍ଷମତା ତୃଷ୍ଣାର ସ୍ତରରେ ଥାଆନ୍ତି । ମୁଷ୍ଟିମେୟ କେତୋଟି ମାତ୍ର ଲୋକ ଥାଆନ୍ତି ଯେଉଁମାନଙ୍କୁ ଜିଜ୍ଞାସୁ ଓ ଅନୁସନ୍ଧିତ୍ସୁ କୁହାଯାଏ । ପ୍ଲାଟୋଙ୍କ ମତରେ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା ଦ୍ୱାରା ଏହି ମୁଷ୍ଟିମେୟ ଲୋକଙ୍କର ଯଦି ଆତ୍ମୋପଲବ୍ଧି ଘଟାଇ ପାରିଯାଏ, ଏହିମାନେ ହିଁ ହେବେ ଆଚାର୍ଯ୍ୟ, ଦ୍ରଷ୍ଟା, ଦାର୍ଶନିକ ଏବଂ ସମାଜର ଗୁରୁ । ଏହି ଜ୍ଞାନୀ ଆଚାର୍ଯ୍ୟମାନେ ଉପଯୁକ୍ତ ଶିକ୍ଷା ପଦ୍ଧତି ଦ୍ୱାରା ଅନ୍ୟମାନଙ୍କର କ୍ଷମତା-ତୃଷ୍ଣା, ସଞ୍ଚୟ ସଂଗ୍ରହ ତୃଷ୍ଣାର ରୂପାନ୍ତର ଘଟାଇ ସେମାନଙ୍କୁ ସମଷ୍ଟି ମଙ୍ଗଳରେ ବିନିଯୁକ୍ତ କରିପାରିବେ । ପ୍ରସଙ୍ଗକ୍ରମେ ହିଁ ମୁଁ ଏଠି ପ୍ଲାଟୋଙ୍କ ତତ୍ତ୍ୱ ଟିକିଏ ବାଢ଼ିଲି, କେବଳ ଏହି ଉଦ୍ଦେଶ୍ୟରେ ଯେ ପରମ ସତ୍ୟକୁ ଅଭୀପ୍ସା, ବିନମ୍ର, ଜିଜ୍ଞାସା, ସେବା, ସମର୍ପଣ, ସଂଯମ ଏବଂ ପ୍ରବଳ ବ୍ୟାକୁଳତା ବ୍ୟତିରେକେ କେହି ଉପଲବ୍ଧି କରିପାରିବେ ନାହିଁ ଏବଂ ସତ୍ୟର ଉପଲବ୍ଧି କଲା ପରେ ପୃଥିବୀରେ

ଏପରି କୌଣସି ମୁହୂର୍ତ୍ତ ଜନ୍ମି ନାହିଁ ବା ଜନ୍ମିବ ବି ନାହିଁ, ଯେ କି ବହିଟାଏ ଲେଖି, ବକ୍ତୃତା ଭାଷଣ ଦେଇ ବାଣୀ ଦ୍ୱାରା ଏହି ସତ୍ୟର ପରିସ୍ଥିତିକୁ ଅନ୍ୟ ଆଗରେ ବାଢ଼ି ପାରିବ ବା ଅନ୍ୟକୁ ସତ୍ୟ ବିଷୟରେ ଉପଲବ୍ଧି କରାଇ ଦେବ । ଦମ୍ଭ, ଦର୍ପ, ଅଭିମାନ, କ୍ରୋଧ, ରୁକ୍ଷଭାବ ଆଭିଜାତ୍ୟ ଗର୍ବ ଏହି ସବୁଟି ଦୁର୍ଗୁଣକୁ ସମ୍ପୂର୍ଣ୍ଣ ତ୍ୟାଗ କରି ସତ୍ୟ ଜାଣିବାକୁ ଏକାନ୍ତ ବ୍ୟାକୁଳତାରେ ବ୍ୟକ୍ତିବିଶେଷ ସତ୍ୟକୁ ଉପଲବ୍ଧି କରିଥାନ୍ତି । ମୁଁ ସେହି ସତ୍ୟର କିଞ୍ଚିତ ମାତ୍ର ଉପଲବ୍ଧି କରିଛି, ମୋର ଏ ବିଷୟରେ କିଛି କହିବାକୁ ବା ଲେଖିବାକୁ ଆନନ୍ଦାତିଶଯ୍ୟ ବଢ଼ିବାରୁ ହିଁ ଲେଖୁଛି ବା କହୁଛି । ମାତ୍ର ପାଠକପାଠିକାଙ୍କୁ ଏହି ସତ୍ୟରୂପୀ ଭଗବାନଙ୍କୁ ଉପଲବ୍ଧି କରାଇବାର ଦୁରାଶା ପୋଷଣ ମୁଁ କରୁନାହିଁ । ମୁଁ ତ ନିଜେ ଅନ୍ଧ, ଅନ୍ୟକୁ କ'ଣ ବା ବାଟ ବତାଇବ ? ମହାମତି ନିଉଟନଙ୍କ ଭାଷାରେ ଜ୍ଞାନର ଅନନ୍ତ ମହାସାଗର ମୋର ଆଗରେ ବିଦ୍ୟମାନ ଏବଂ ମୁଁ ତା'ର କୂଳରେ ବସି ଚପଳ ବାଳକ ପରି କେତେକ ବାଲିଗରଡ଼ା ସାଉଁଟି ସେଗୁଡ଼ିକୁ ଅନ୍ୟ ଆଗରେ ଦେଖାଇବାରେ ଆନନ୍ଦ ପାଉଛି ମାତ୍ର । ସମସ୍ତେ କ୍ଷମା ଦେବେ: ସତ୍ୟକୁ ମୁଁ ଯେପରି ଉପଲବ୍ଧି କରିଛି, ତାର ବିରାଟତ୍ୱକୁ ସୀମିତ ଭାଷାରେ ପ୍ରକାଶ କରିବାକୁ ଅକ୍ଷମ ହେଉଛି ।

ବର୍ତ୍ତମାନ ଚାଲ ଆମେ କଳ୍ପନା ବଳରେ ସେହି ଯୁଗକୁ ବୁଲି-ଯିବା, ଯେତେବେଳେ କି ମନୁଷ୍ୟ ବଣର ଫଳମୂଳ ଆହରଣ ଓ ଶିକାର କରି ଚଳୁଥିଲା । ଏହି ଯୁଗରେ ତାର ସମ୍ପତ୍ତି ସଂଗ୍ରହ ତୃଷ୍ଣା ମୁଣ୍ଡ ଟେକି ନ ଥିଲା । ଏଣୁ ବାଣ୍ଟି କୁଣ୍ଟି ଚଳୁଥିଲା । ସେହି କାଳର ମନୁଷ୍ୟ ଦଳ ଦଳ ହୋଇ ଗୋଷ୍ଠି ଗୋଷ୍ଠି ଗୋଷ୍ଠି ବା ସମାଜରେ ବାସ

କରୁଥିଲା । ସମାଜଟି କମ୍ୟୁନିଷ୍ଟିକର ଥିଲା । ଏହା ଏକ ଅମାର୍ଜିତ ଧରଣର କମ୍ୟୁନିଜମ ଥିଲା । ଲୋକଙ୍କର ମୂଢ଼ ପ୍ରଣାଳୀ ଦ୍ୱାରା ଦ୍ୱାରି ଥିଲା । ପଳାଇ ଯାଉଥିବା ନିରସ୍ତ ଶତ୍ରୁଙ୍କୁ ହତ୍ୟା କରିବାକୁ ସେମାନେ ପସନ୍ଦ କରୁ ନଥିଲେ । ଅଥଚ ଟିଶୁପରି ବେଳେ ବେଳେ ସେମାନଙ୍କଠି ପ୍ରଚଣ୍ଡ କ୍ରୋଧ ବି ଦେଖା ଦେଉଥିଲା, ଯେଉଁ ଅବସ୍ଥାରେ କି ସେମାନେ ହିତାହିତ ଜ୍ଞାନଶୂନ୍ୟ ହୋଇ ଯାଉଥିଲେ । ଉଦାରତା, ଅନୁସନ୍ଧିତ୍ସା ସାଙ୍ଗକୁ ପ୍ରଚଣ୍ଡ କ୍ରୋଧ ଓ ହିଂସାର ସହାବସ୍ଥାନ ଏହି ଆଦିମ ଯୁଗର ବିଶେଷ ଲକ୍ଷଣ ଥିଲା । ଦଳର ବିଚ୍ଛିନ୍ନାଚରଣ କେହି କେଲେ ସମସ୍ତେ ମିଶି ତାର ବିଚାର କରୁଥିଲେ । ଖାଦ୍ୟପାଇଁ ଏବଂ (ସ୍ତ୍ରୀ ପାଇଁ) ଦଳ ଦଳ ମଧ୍ୟରେ ଖୁବ୍ଷଣ ଲଢ଼େଇ ହେଉଥିଲା । ବିଜିତ ଦଳର ପୁରୁଷ ଓ ସ୍ତ୍ରୀଙ୍କୁ ବିଜେତା ଦଳର ଦାସ କରି ରଖାଗଲା ଏବଂ ସେମାନଙ୍କୁ ସମାଜରେ ନିମ୍ନତର ସ୍ଥାନ ଦିଆଗଲା । କାଳକ୍ରମେ ଏହିମାନେ ହିଁ ଅସ୍ପୃଶ୍ୟ ଜାତି ବୋଲି ଭାରତୀୟ ସମାଜରେ ପରିଗଣିତ ହେଲେ ।

ଦଳ ମଧ୍ୟରେ ଥିବା ସବୁଠୁ ବୟୋବୃଦ୍ଧ ବ୍ୟକ୍ତି (ପୁରୁଷ ହେଉ ବା ସ୍ତ୍ରୀ ହେଉ) ଦଳପତି ଥିଲେ । ତାଙ୍କର ମତ ହିଁ ଶେଷ ସିଦ୍ଧାନ୍ତ ଥିଲା । ପାରିବାରିକ ଜୀବନର ବିକାଶ ପରେ ଧୀରେ ଆସିବା ସମାଜରେ ଉଣା ହେଲେ ବି ପରିବାର ଭିତରେ ମାଆର ସମ୍ମାନ ଓ ମର୍ଯ୍ୟାଦାରେ ଅପେକ୍ଷାକୃତ କମ ଆଞ୍ଚ ଆସିଥିଲା ବୋଲି ମୋର ମତ । ମହାଭାରତ ଓ ରାମାୟଣ ଯୁଗର ସମାଜକୁ ଯଦି କୃଷିଯୁଗର ବା ଋଷିଯୁଗର ସମାଜ ବୋଲି ବିବେଚନା କରାଯାଏ ତ, ଆମେ ଦେଖିବା ଯେ ଜନନୀ ଜାତିର ମର୍ଯ୍ୟାଦାରେ ଭାରତ କଦାପି ଲଘୁଭାବ ପୋଷଣ କରେନି । ପୁରୁଷର ପ୍ରାଧାନ୍ୟଠାରୁ ନାରୀର ପ୍ରାଧାନ୍ୟକୁ କେଉଁଠି କୌଣସି

ଆଦିମ ସମାଜରେ ସ୍ୱୀକାର କରାଯାଉଥିଲା । ତାଙ୍କର କାର୍ଯ୍ୟକ୍ଷମ ଅଞ୍ଚଳରେ ନାରୀ ହିଁ ସର୍ବମୟ କର୍ତ୍ତ୍ରୀ ଥିଲେ ବୋଲି ମହାଭାରତର ଆଖ୍ୟାୟିକାରୁ ମିଳେ ।

ବୟୋବୃଦ୍ଧ ବ୍ୟକ୍ତିଙ୍କୁ ବା ଦଳପତିଙ୍କୁ ସମସ୍ତେ ଦେବତା ଜ୍ଞାନରେ ଭକ୍ତି କରୁଥିଲେ । କାଳକ୍ରମେ ଉକ୍ତ ବୟୋବୃଦ୍ଧ ବ୍ୟକ୍ତିଙ୍କ ପରାମର୍ଶ କ୍ରମେ ଦଳର ସବୁଠୁଁ ବଳିଷ୍ଠ, ସାହସୀ ଓ ନିଃସ୍ୱାର୍ଥ ବ୍ୟକ୍ତି ଦଳର ନାୟକ ହେଲେ । ଏହି ନାୟକଙ୍କର ତଥା ସମଗ୍ର ଦଳଟିର ଗୁରୁ ଓ ପରାମର୍ଶଦାତା ହୋଇ ରହିଲେ ସେହି ବର୍ଷୀୟାନ୍ ବ୍ୟକ୍ତି ଯେ, କି ଭୂତପୂର୍ବ ଦଳପତି ଥିଲେ । ଦଳର ଯୁବକ ଦଳପତି ଏବଂ ତାଙ୍କର ବୃଦ୍ଧ ଗୁରୁ ଉଭୟଙ୍କୁ ଭକ୍ତି ଶ୍ରଦ୍ଧା କରାଗଲା ମାତ୍ର ବୃଦ୍ଧ ଗୁରୁଙ୍କ ଆସନ ଦଳପତିଙ୍କ ଆସନଠୁଁ ବହୁ ଉଚ୍ଚରେ ରଖାଗଲା ।

କାଳକ୍ରମେ ଉକ୍ତ ଦଳପତି ହେଲେ ରାଜା, ସମ୍ରାଟ ବା ଚକ୍ରବର୍ତ୍ତୀ ଯେତେବେଳେ ଦଳଟି ବଢ଼ି ବଢ଼ି ବୃହତ୍ତର ସମାଜ ବା ଜାତିରେ ପରିଣତ ହେଲା । ଏହି ପରିବର୍ଦ୍ଧିତ ସମାଜରେ ଯେଉଁମାନେ ବୟୋବୃଦ୍ଧ, ବହୁ ଅଭିଜ୍ଞତା ଅନୁଭୂତିର ଅଧିକାରୀ ଥିଲେ, ସେହି-ମାନେ ସାରା ସମାଜର ଗୁରୁ ଏବଂ ରାଜା, ସମ୍ରାଟ ଓ ଚକ୍ରବର୍ତ୍ତୀଙ୍କର ବ ନମସ୍ୟ ଗୁରୁ ବୋଲାଇଲେ ।

ପୂର୍ବ ଅଧ୍ୟାୟରେ ଯେଉଁ ଦୁଇ କିସମର ସ୍ୱାମୀଙ୍କ କଥା କହିଛୁ, ଏହି ଦୁଇକିସମର ସ୍ୱାମୀ ସେହି ପୂର୍ବର ବୟୋବୃଦ୍ଧ ଗୁରୁ ଏବଂ ଯୁବକ ଦଳପତିଙ୍କର ରୂପାନ୍ତର । ଏ ଦୁଇ କିସମର ସ୍ୱାମୀ ହେଉଛନ୍ତି ସେହି ଆଦିମ ସମାଜର ସବୁଠୁଁ ବୁଢ଼ା ମାତ୍ର ସବୁଠୁଁ ଅଭିଜ୍ଞ ବ୍ୟକ୍ତି ପୁଣି ସବୁଠୁ ବଳିଷ୍ଠ ଉଦାର ମାତ୍ର ନିଃସ୍ୱାର୍ଥ ଦଳପତିଙ୍କର ରୂପାନ୍ତରିତ କ୍ରମପରିଣତି ମାତ୍ର । ଜଣେ ହେଉଛନ୍ତି ସ୍ଥିର ପ୍ରଜ୍ଞ ମାତ୍ର ସର୍ବତ୍ୟାଗୀ

ସନ୍ନ୍ୟାସୀ ଏବଂ ଅନ୍ୟ ଜଣଙ୍କ ହୋଉଛନ୍ତି ସମାଜର ସବୁ ଐଶ୍ବର୍ଯ୍ୟର ଈଶ୍ୱର ଅଥଚ ପଦ୍ମପତ୍ରରେ ଜଳପରି ସେ ସମ୍ପୂର୍ଣ୍ଣ ଅନାସକ୍ତ ।

ସ୍ଥିତପ୍ରଜ୍ଞ ସାଧୁ ସନ୍ଥ ସନ୍ନ୍ୟାସୀ ଆଦିମ କାଳରୁ ଭାରତୀୟ ସମାଜରେ ନିରବଚ୍ଛିନ୍ନ ଭାବରେ ରହିଆସିଛନ୍ତି । ମହାତ୍ମାଗାନ୍ଧି ଓ ବିନୋବାଜୀଙ୍କି ତ ମୁଁ ଏହି ସର୍ବତ୍ୟାଗୀ ସନ୍ନ୍ୟାସୀ ଭାବରେ ଦେଖୁଛି । ଶ୍ରୀରାମକୃଷ୍ଣ ପରମହଂସ, ଯୋଗୀ ଅରବିନ୍ଦ, ଠାକୁର ନିଗମାନନ୍ଦ, ଶ୍ରୀ ଅନୁକୂଳ, ଭଗବାନ ରମଣ ମହର୍ଷି ଏବଂ ଶ୍ରୀ ସତ୍ୟସାଇବାବାଙ୍କୁ ବି ମୁ ଏହି ପ୍ରଥମ ଶ୍ରେଣୀର ଜ୍ଞାନୀ ବୋଲି ସ୍ୱୀକାର କରୁଛି । ମାତ୍ର ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ କାହାନ୍ତି ? ଭାରତ ଗଗନରୁ ଧର୍ମାଶୋକଙ୍କର ତିରୋଧାନ ପରେ ମୁଁ ଆଜି ପର୍ଯ୍ୟନ୍ତ ଆଉ କାହିଁ ସେହିପରି ଜଣେ ବିରାଟ ମହୀୟାନ ବ୍ୟକ୍ତିଙ୍କି ଦେଖୁନି, ଯେ କି ସକଳ ଐଶ୍ବର୍ଯ୍ୟର ବୁଡ଼ି ରହି ବି ସମ୍ପୂର୍ଣ୍ଣ ନିର୍ମଳ ନିର୍ଲିପ୍ତ ରହିପାରିଛନ୍ତି । ମୋର ଏହା ଏକ ଦିବା ସ୍ୱପ୍ନ ହେଲେ ବି ମୁଁ ପ୍ରକାଶ ନ କରି ରହିପାରୁନି ଯେ ଅଶୋକଙ୍କର ଅସମ୍ପୂର୍ଣ୍ଣ କାମକୁ ସମ୍ପୂର୍ଣ୍ଣ କରିବାର ଶୁଭ ମୁହୂର୍ତ୍ତ ବର୍ତ୍ତମାନ ଆସିଯାଇଛି । ଭାରତ ବରାବର ଅଶୋକଙ୍କ ଆଦର୍ଶକୁ ପାଳି ଆସୁଛି; ଯୁଦ୍ଧକରି ହାତିଆର ବଳରେ ଭାରତ କେବେ ପ୍ରତିବେଶୀ ରାଜ୍ୟମାନଙ୍କୁ ଆକ୍ରମଣ କରି ଅଧିକାର କରିନାହିଁ ବା ସାମ୍ରାଜ୍ୟ ସ୍ଥାପନ କରିନାହିଁ । ମାତ୍ର ସାରା ପୃଥିବୀରୁ କପରି ହିଂସାର ଅସ୍ତ୍ରଶସ୍ତ୍ରାଦି ଲୋପ ହେବ, ବା ସେଗୁଡ଼ିକୁ ସମ୍ପୂର୍ଣ୍ଣ ବର୍ଜନ କରାଯିବ, କୋଟିଏ-ହେଲେ ଜାତିର ବି ସୈନ୍ୟ ରହିବନି, ଏହି ସ୍ୱପ୍ନ ତ ଯିଶୁ, ବୁଦ୍ଧ, ଅଶୋକ ଦେଖିଥିଲେ । ଏ ସ୍ୱପ୍ନ ତ ମହାତ୍ମାଗାନ୍ଧି ଘୋଷିଥିଲେ । ବୁଦ୍ଧ, ଅଶୋକ, ଯିଶୁ ଓ ଗାନ୍ଧିଙ୍କ ଏହି ସ୍ୱପ୍ନକୁ ସଫଳ କରିବାର ଅଭିଳାଷା ଇନ୍ଦିରାଜୀଙ୍କଠାରେ ଧୀରେ ଧୀରେ ରୂପାୟିତ ହେବାର ଏକ ସୁସ୍ପଷ୍ଟ ଆଭାସ ମୁ ଦେଖିପାରୁଛି ।

ସମ୍ପଦ କ୍ଷମତା ପ୍ରଭୃତି ଐଶ୍ୱର୍ଯ୍ୟମାନଙ୍କୁ ଧୂଳି ପରି ଗୋଡ଼ରେ ଆଡ଼େଇ ଦେଇ ଫକୀର ସନ୍ନ୍ୟାସୀ ହେବାଟା ଯେତେ ସହଜ, ସବୁ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ବି ପଙ୍କୁଆ ମାଛପରି ତହିଁରେ ନିର୍ଲିପ୍ତ ହୋଇ ରହିପାରିବା ସେତେ ସହଜ ନୁହେଁ । ଆମେ ବ୍ୟାସ, ବାଲ୍ମୀକି ପ୍ରଭୃତିଙ୍କି ଭଗବାନ ବୋଲି କହୁ ତ ଥାଉଁ । ମାତ୍ର କୃଷ୍ଣଙ୍କୁ, ରାମଙ୍କୁ ଭଗବାନ ପୁରୁଷୋତ୍ତମ ଭାବରେ ଡାକୁ ଓ ପୂଜାକରୁ । କାରଣ ରାମ ଓ କୃଷ୍ଣଙ୍କର ସକଳ ପ୍ରକାର ଐଶ୍ୱର୍ଯ୍ୟ ଥାଇ ବି ସେ ଦୁହେଁ କାହିଁରେ ଲିପ୍ତ ନ ଥିଲେ । ସର୍ବତ୍ୟାଗୀ ପହିଲି କଷମର ଜ୍ଞାନୀଙ୍କର ଏକମାତ୍ର କର୍ତ୍ତବ୍ୟ ଲକ୍ଷ ବା ଧ୍ୟେୟ ହେବା ଉଚିତ:-କିପରି ନିଜର ସାଧନା ଓ ତପସ୍ୟା ଦ୍ୱାରା ସେମାନେ ଦ୍ୱିତୀୟ ଶ୍ରେଣୀର ଜ୍ଞାନୀଙ୍କର ଅବତରଣ ମର୍ତ୍ତ୍ୟଧାମରେ ଘଟାଇ ପାରିବେ, ଯେଉଁମାନଙ୍କ ପାଦରେ କି ଐଶ୍ୱର୍ଯ୍ୟ ଲକ୍ଷ୍ମୀ ଲୋଟି ଯାଉଥିବ ଅଥଚ ସେମାନେ ହରିଶ୍ଚନ୍ଦ୍ର, ନଳ ଓ ଛତ୍ରପତି ଶିବାଜୀଙ୍କ ପରି ତହିଁରେ ଆସକ୍ତ ହେବେନାହିଁ । ଗାନ୍ଧି, ବିନୋବା, ଅରବିନ୍ଦ ତଥା ଅତୀତ ଓ ବର୍ତ୍ତମାନ ଯୁଗର ବହୁ ସାଧୁ ସନ୍ଥଙ୍କ ତପସ୍ୟା ଓ ସାଧନାର ଫଳ ଫଳିବାକୁ ଆରମ୍ଭ କରିଛି ୧୯୫୦ ଖ୍ରୀଷ୍ଟାବ୍ଦରୁ । ଶନୈଃ ପନ୍ଥା, ଶନୈଃ ପର୍ବତ ଲଂଘନଂ । ଏହି ମତରେ ହିଁ ଭାରତ ତାର ଶାଶ୍ୱତ ସନାତନ ମୂଲ୍ୟବୋଧକୁ ସତ୍ୟ-ଶିବ ସୁନ୍ଦର ଭାବନାକୁ ରୂପାୟିତ କରିବାରେ ଲାଗିଛି । ନେହେରୁ ଯେଉଁକଟି ଆରମ୍ଭଥିଲେ, ଶାସ୍ତ୍ରୀଜୀ ତାହାଙ୍କଠାରୁ ଆହୁରି ପାହାଚେ ଆଗକୁ ମାଡ଼ିଯାଇଛନ୍ତି । ଇନ୍ଦିରାଜୀଙ୍କର ପଦକ୍ଷେପ ଆନ୍ତର୍ଜାତୀୟ କ୍ଷେତ୍ରରେ ଭାରତର ନିଷ୍ପକ୍ଷ, ନିର୍ଭୀକ ଓ ନିର୍ଭୟ ମସ୍ତକ ଆହୁରି ଉଚ୍ଚ କରିଦେଉଛି । ତାଙ୍କର ଜରୁରୀ ପରିସ୍ଥିତି ଘୋଷଣାରୁ ମୋର ମନରେ ଏହି ପ୍ରଶ୍ନ ଉଠୁଛି—୨୦ ବର୍ଷ ଆଗରୁ ଏ ଘୋଷଣା କରିବାଟା ଉଚିତ୍ ହୋଇ ନଥାନ୍ତା କି ? ମାତ୍ର ଏପରି ପ୍ରଶ୍ନ କରିବାକୁ ମୁଁ କିଏ ? ଯାହାର ପ୍ରଚ୍ଛନ୍ନ ନିର୍ଦ୍ଦେଶ ଓ ଅଭୂତ

ଆତସଫାଇ ଏହି ବିଶ୍ୱ ବ୍ରହ୍ମାଣ୍ଡରେ କାମକରି ଯାଉଛି, ତାଙ୍କର ମଙ୍ଗଳମୟ ନିର୍ଦ୍ଦେଶ ଓ ସଙ୍କେତ ଯାହା ଯେତେବେଳେ ହେବାର କଥା, ତାହା ଠିକ୍ ସେହି ମୂହୁର୍ତ୍ତରେ ଘଟିଯାଉଛି । ତଥାକଥିତ ଶୁଭ ଅଶୁଭ ସମ୍ପଦ ବିପଦ ଲାଭ କ୍ଷତି ଜୟ ପରାଜୟ ସବୁଠି ତାଙ୍କର କରୁଣା ଓ କଲ୍ୟାଣର ଅବିରଳ ବୃଷ୍ଟିଧାରା ବର୍ଷି ଯାଉଛି ।

ଆଦିମ ମାନବ ତାର ଶିଶୁ ସୁଲଭ ଅନୁସନ୍ଧିତ୍ସାକୁ ଆହାର୍ଯ୍ୟ ବସ୍ତୁ ପାଇବାରେ ବା ଜୀବନର ଅନ୍ୟବିଧ ଜଟିଳ ସମସ୍ୟା ସମାଧାନରେ ଖଟାଇବାରେ ଲାଗିଲା । ବିସ୍ମୟକର, ଭୟଙ୍କର, ଆନନ୍ଦପ୍ରଦ ବା ସୁନ୍ଦର ବସ୍ତୁ ପ୍ରତି ତାର ଜିଜ୍ଞାସାର ସ୍ରୋତ ଧାବିତ ହେଲା । ଏହିସବୁ ବସ୍ତୁକୁ ସେ ସ୍ତୁତିକରି ବସିଲା । ଭଜନ ଗାଇ ଜଣାଇଲା । ଆକାଶରେ ଧାବମାନ ମେଘକୁ ସେ ଏକ ବିଶେଷ ଜୀବ ମନେକରି ନେଲା । ସେ ତଥାକଥିତ ଜଡ଼ ବସ୍ତୁରେ ବି ଚେତନାର ସଙ୍କେତ ଦେଖିଲା । ମେଘ ବକ୍ଷରେ ସୁନ୍ଦର ପ୍ରଦୀପ୍ତିମନ୍ତ ବିଦ୍ୟୁତରେଖାର କମ୍ପନ ଦେଖି ଏବଂ ପରବର୍ତ୍ତୀ କ୍ଷଣରେ ବଜ୍ରନିର୍ଘାତ ଶୁଣି ଯୁଗପତ୍ ମୁଗ୍ଧ ଚକିତ ଓ ଭୀତ ହୋଇପଡ଼ିଲା । ପ୍ରଖର ଗ୍ରୀଷ୍ମର ଦୁଃସହ ଉତ୍ତାପ ପରେ ମେଘର ଶୀତଳ ଧାରାପାତ ତାହାକୁ ସ୍ନାୟିକ ତଥା କୃତଜ୍ଞ କରି ଦେଉଥିଲା । ଭୀତିପ୍ରଦ ନିଶାନ୍ଧକାର ପରେ ରଙ୍ଗିଣୀ ଉଷାର ସସ୍ମିତ ଅରୁଣିମାକୁ ସେ ଅକୃତ୍ରିମ ଉଦ୍‌ବେଳ ସ୍ୱାଗତିକା ଗାଇ ଶୁଣାଇଲା । ଏହି ସବୁ ଦେଖି ଶୁଣି ବା ନାନା ଭାବରେ ଉପଲବ୍ଧି କରି ସେହି ଶିଶୁ ପ୍ରକୃତିର ଜିଜ୍ଞାସୁ ଆଦିମ ମାନବର ହୃଦୟରୁ—ଏ ବିଶ୍ୱ ବ୍ରହ୍ମାଣ୍ଡର ଅନ୍ତରାଳରେ, ଏହି ସୃଷ୍ଟିର ପଛରେ ଯେ ଜଣେ ସ୍ରଷ୍ଟା ଅଦୃଶ୍ୟ ଦର୍ଶୀ ଭାବରେ ରହିଛନ୍ତି—ଏହି ସତ୍ୟ ଶିବ ସୁନ୍ଦର ଧାରଣାର ସ୍ଫୁରଣ ଘଟିଲା ।

ମାର୍କସ୍‌ଙ୍କ ମତରେ ମନୁଷ୍ୟ ତାର ସମାଜର ସୁରକ୍ଷା ପାଇଁ ଆତ୍ମା, ଭଗବାନ, ଈଶ୍ୱର ବା ଧର୍ମ ପ୍ରଭୃତି କାଳ୍ପନିକ ବସ୍ତୁକୁ ଉଦ୍ଭାବନ କରିଥିଲା । ଆମର କିନ୍ତୁ ବିନମ୍ର ମତ ଯେ ମନୁଷ୍ୟ ତାର ସମାଜର ସୁରକ୍ଷା ପାଇଁ ସଚ୍ଚିଦାନନ୍ଦ ବା ଅମୃତ ତତ୍ତ୍ୱକୁ ଉଦ୍ଭାବନ କରିନାହିଁ । ସେ ଏହି ସତ୍ୟକୁ ବା ଆତ୍ମାକୁ ଆବିଷ୍କାର କରିଛି । ମାର୍କ୍ସ ଏବଂ ଗାନ୍ଧି ଭିତରେ ଡ଼ାସକାପିଟାଲ ଓ ବେଦାନ୍ତ ଦର୍ଶନ ଭିତରେ ଏହାହିଁ ମୌଳିକ ଭେଦ । ଗାନ୍ଧିଙ୍କ ମତରେ ଧର୍ମ ଅଫିମ ନିଶା-ନୁହେଁ, କିମ୍ବା ଭଗବାନ୍ ଏକ ଗୁଳିଖିଆ ମନଗଢ଼ା ବସ୍ତୁ ନୁହେଁ । ସମାଜର ସୁରକ୍ଷା ପାଇଁ ମଣିଷ ଧର୍ମ ବା ଭଗବାନଙ୍କୁ ଉଦ୍ଭାବନ କରିନ, ମାତ୍ର ବହୁ ଭୁଲ ଝୁଣ୍ଟା କରି ଦୀର୍ଘ କାଳର ସଙ୍ଘର୍ଷ, ସାଧନା ଓ ଅନୁଭୂତି ପରେ ଏହି ଆତ୍ମାକୁ ନିଜ ପିଣ୍ଡ ତଥା ସମଗ୍ର ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ ବୋଲି ଆବିଷ୍କାର କରିଛି ।

ମଣିଷ-ସମାଜ ତାର ଯୁଗ ଯୁଗ ବ୍ୟାପି ସାଧନା ପ୍ରୟୋଗ ଓ ଅନୁଭୂତି ପରେ ଆବିଷ୍କାର କରିଛି ଯେ ଭଗବାନଙ୍କୁ ନ ଜାଣିଲେ, ଧର୍ମର ବାଟରେ ନ ଚାଲିଲେ ମଣିଷର ଗୋଟିଏ ମାତ୍ର ପଦକ୍ଷେପ ବି ନିର୍ଭୁଲ ହେବନି ବରଂ ତାର ପ୍ରତି ପଦକ୍ଷେପ ବେତାଳିଆ ହୋଇ ଯାଉଥିବ । ମାର୍କସ୍‌ଙ୍କ ଦ୍ୱନ୍ଦ୍ୱ ମୂଳକ ବସ୍ତୁ ବିଜ୍ଞାନ ମତରେ ଜଡ଼ ବସ୍ତୁ ଏବଂ ତାର ଅନ୍ତର୍ନିହିତ ଶକ୍ତିର ଘାତ ପ୍ରତିଘାତ ଫଳରେ ଏହି ବିଶ୍ୱର ସୃଷ୍ଟି; ସ୍ଥିତି ଓ ପ୍ରଳୟର ଆବୃତ୍ତି ଚାଲିଛି । ଏହି ଘାତ-ପ୍ରତିଘାତରୁ ହିଁ ଜଡ଼ ବସ୍ତୁରୁ ଅର୍ଦ୍ଧଚେତନ ପଶୁ ପକ୍ଷୀ ଓ ଚେତନାଶୀଳ ମନୁଷ୍ୟର କ୍ରମ ବିକାଶ ଘଟିଛି । ଏଣୁ ଆଜ ଏକ ଚେତନାଶୀଳ ନିରାକାର ଅବ୍ୟକ୍ତ ଭଗବାନ କାହୁଁ ଆସିଲେ ବୋଲି ମାର୍କ୍ସ ପଚାରନ୍ତି ।

ମାର୍କସ୍‌ ଯାହାକୁ ବସ୍ତୁ ବୋଲି କହନ୍ତି ତାହା ଏକ ସତ୍ତା (Existence) ମାତ୍ର । ବେଦାନ୍ତ ମଧ୍ୟ ମାର୍କସ୍‌ଙ୍କ ସେହି ବସ୍ତୁକୁ ସତ୍‌ ବୋଲି କହେ । ସତ୍‌ ଶବ୍ଦର ଅର୍ଥ ହେଉଛି ଅବସ୍ଥିତି ବା ବିଦ୍ୟମାନତା ଜ୍ୟାମିତିକ ବିନ୍ଦୁ ପରି ଏହି ସତ୍‌ ବସ୍ତୁର ଅବସ୍ଥିତି ଅଛି, ମାତ୍ର ବିସ୍ତୃତି ନାହିଁ । ବେଦାନ୍ତ ମତରେ ଏହି ବିସ୍ତାର ଶୂନ୍ୟ ବସ୍ତୁ ଯେ କେବଳ-ମାତ୍ର ସତ୍‌, ତାହାହିଁ ଶେଷ ସିଦ୍ଧାନ୍ତ ନୁହେଁ । ଏହି ଅକ୍ଷୟ ବସ୍ତୁ ଏକାଧାରରେ ଅଟନ୍ତି:-ସତ୍‌+ଚିତ୍‌+ଆନନ୍ଦ=ସଚ୍ଚିଦାନନ୍ଦ । ଏହି ସଚ୍ଚିଦାନନ୍ଦ ହିଁ ଉଭୟ ସ୍ରଷ୍ଟା ଏବଂ ସୃଷ୍ଟି ରୂପେ ପ୍ରକାଶିତ । ଅତଏବ ଶ୍ରୀ ମା'ଙ୍କ ମତରେ ସେହି ହେଉଛନ୍ତି, ଦ୍ରଷ୍ଟା, ଦୃଶ୍ୟ; ଅଭିନେତା ଏବଂ ଅଭିନୟ । ବେଦାନ୍ତ ମତରେ ସଚ୍ଚିଦାନନ୍ଦ ଏକ ଏବଂ ଅଦ୍ୱିତୀୟ ଅଥଚ ବିଶ୍ୱରୂପ । ସେ ଏକ ଏଣୁ ଅକ୍ଷର-ଓ ସନାତନ । ସେ ବିଶ୍ୱରୂପ ଏଣୁ କ୍ଷର ଓ ଲୀଳାମୟ । ସଚ୍ଚିଦାନନ୍ଦଙ୍କର ଏହି କ୍ଷର ଓ ଅକ୍ଷର ଉଭୟ ତତ୍ତ୍ୱକୁ ଯେ ଜାଣିଛି, ଉପଲବ୍ଧି କରିଛି, ସେହି ହୁଏ ପୁରୁଷୋତ୍ତମ, ଜ୍ଞାନୀ ବା ଯୋଗୀ ।

ଭାରତର ଆଦିମ ମାନବ ସମାଜର ଯୁଗଯୁଗର ଅନୁଭୂତି, ସାଧନା ଏବଂ ଆତ୍ମତତ୍ତ୍ୱର ଆବିଷ୍କାର ଏବଂ ଆପାତଦୃଷ୍ଟିରୁ ବହୁ ପରସ୍ପର ବିରୋଧୀ ତତ୍ତ୍ୱମାନ ବି ବେଦ ଉପନିଷଦରେ ଦେଖିବାକୁ ମିଳିବ । ସମାଜର ଗୁରୁତ୍ୱେନି ଯୁଗ ବା ଅବସ୍ଥାର ଚିହ୍ନ ଏଥିରୁ ମିଳୁଥିବାରୁ ଏହା ନିର୍ଯ୍ୟାତ ଭାବରେ ପ୍ରମାଣ କରାଯାଇପାରେ ଯେ ଖ୍ରୀ: ପୂ ୬୦୦ ପୂର୍ବରୁ ଭାରତ ପରିପକ୍ୱ ଅବସ୍ଥା ଲାଭ କରିଥିଲା ।

# ଷଷ୍ଠ ଅଧ୍ୟାୟ

## କୃଷି ସମାଜର ଅଭ୍ୟୁଦୟ

ନୂତନ ପ୍ରସ୍ତର ଯୁଗରୁ ମଣିଷ-ସମାଜରେ ଆଉ ଏକ ନୂତନ କ୍ରାନ୍ତି ନୂଆ ବୈଶିଷ୍ଟ୍ୟତା ଦେଖାଦେଲା । ମଣିଷ ଗୃହ କରି ଶିଖିଲା । ସଞ୍ଚୟ, ସଂଗ୍ରହ ତୃଷ୍ଣାର ଜାଗ୍ରତ ଘଟିଲା । ଫଳମୂଳ ଆହରଣ ଓ ଶିକାରୀ ସ୍ତରରୁ ପଶୁପାଳକ ଏବଂ କୃଷକର ଅବସ୍ଥାକୁ ସମାଜର ଉନ୍ନୟନ ଘଟିଲା । ଶୂଦ୍ରାଙ୍ଗରୁ ବୈଶ୍ୟସ୍ତରକୁ ରୂପାନ୍ତର ହେଲା । ମଣିଷର ଆଚରଣ କେବଳମାତ୍ର ଶିଶ୍ନପର ଆହାର ବିହାର ନିଦ୍ରାରେ ପର୍ଯ୍ୟବସିତ ନ ହୋଇ ସଂଚୟ ସଂଗ୍ରହ ଉତ୍ପାଦନମୂଳକ ପାଲଟିଲା ଅନୁସନ୍ଧିତ୍ସାଶକ୍ତି ଆହାର୍ଯ୍ୟ ବସ୍ତୁ ଆହରଣରେ କେବଳ ମାତ୍ର ପ୍ରଯୁକ୍ତ ନ ହୋଇ ସଂଚୟ, ସଂଗ୍ରହ, ଉତ୍ପାଦନ ଓ କାରିଗରୀ·କୌଶଳ ପ୍ରତି ପ୍ରଯୁକ୍ତ ହେଲା । ପରିବାର ଗଢ଼ି ଉଠିଲା; ଶ୍ରମବିଭାଗ ଆସିଗଲା । କୃଷି ସାଙ୍ଗକୁ ନାନା ଶିଳ୍ପଧନ୍ଦାର ସୁବିଧା ଘଟିଲା ।

ଲୋକେ ଦୁର୍ଦ୍ଦିନ ବିରୁଦ୍ଧରେ ସଞ୍ଚିବାକୁ ଲାଗିଲେ । ଏଣୁ ପରସ୍ପରକୁ ଶୋଷଣ କରିବା ବା ଠକିବାର ମନୋବୃତ୍ତି ଦେଖାଦେଲା । କାଲିକି କଣ ଖାଇବି, ଏ ଭାବନା ଆହରଣକାରୀ ବା ଶିକାରୀ ଅବସ୍ଥାରେ ନ ଥିଲା । କୃଷକ ଓ ପଶୁପାଳକ ଅବସ୍ଥାରେ ପରସ୍ପରକୁ

ଦେଖିବାର ପ୍ରବୃତ୍ତି ଆସି ଯିବାରୁ ସମାଜ ଜୀବନରେ ଶାନ୍ତି ରହିଲା ନାହିଁ । ଏହି ଶାନ୍ତି ଫେରାଇ ଆଣିବାକୁ ସମାଜର ଦଳପତି ଓ ବୟୋଜ୍ୟେଷ୍ଠ ମୁଖ୍ୟମାନେ ନାନାବିଧ ନିଷେଧ ଗଢ଼ିଲେ । ଗ୍ରାମ୍ୟ ସମାଜଟିକୁ ଯଥାସମ୍ଭବ ପୂର୍ବର ସାମ୍ୟମୈତ୍ରୀର ଭିତ୍ତି ଉପରେ ବଜାୟ ରଖିବାକୁ ଚେଷ୍ଟିତ ହେଲେ ।

ପଶୁପାଳକ ଓ କୃଷକ ସମାଜର ଲୋକଙ୍କର ପରୋପକାର ପ୍ରତି ପ୍ରବୃତ୍ତି ବଢ଼ିଲା । ବିଷ୍ଣୁଙ୍କର, ଇନ୍ଦ୍ରଙ୍କର ବନ୍ଧୁମାନଙ୍କ ଅନ୍ତରାଳରେ ଥିବା ଅତି ବଡ଼ ପିତାମାତାଙ୍କ ଅନ୍ତର ଭିତରେ ବଣ୍ଟାଧ ଲୁଟିଗଲା । ବିଷ୍ଣୁଙ୍କର ଓ ଇନ୍ଦ୍ରଙ୍କର ବନ୍ଧୁର ଅନ୍ତରାଳରେ ଯେଉଁଠାଏ ଅତି ବଡ଼ ବାପା ବା ମାଆ ଲୁଚି ରହିଥିଲେ ବି "ମୁଁ ଯଦି ଅନ୍ୟର ଫସଲ ବା ପଶୁ ଚୋରାଇ ନେଇଯାଏ, ତେବେ ମୋର ସେ କଷ୍ଟ ଦୂର କରିପାରିବ ନାହିଁ । ଏହି ପ୍ରକାର ଚୌର ପ୍ରବୃତ୍ତି ଓ ନାସ୍ତିକ ଧାରଣା ଜାତ ହେଲା ।

ଖ୍ରୀ: ପୂ: ୦୦୦୦ ପର୍ଯ୍ୟନ୍ତ ଅର୍ଥାତ୍ ଆର୍ଯ୍ୟମାନଙ୍କ ଅଭ୍ୟୁଦୟ ପର୍ଯ୍ୟନ୍ତ ଏହି ବୈଶ୍ୟଯୁଗର ସ୍ତର ରହିଥିଲା ବୋଲି ମୋର ଅଭିମତ । ବୈଶ୍ୟଯୁଗର ଅଭ୍ୟୁଦୟଠାରୁ ସମାଜ ବିଶେଷତଃ ଭାରତୀୟ ସମାଜ ଅନ୍ୟ କ୍ଷାତ୍ରକାଳ ଯୁଗକୁ ଗତି କଲା । ଏହି କ୍ଷାତ୍ରକାଳ ଯୁଗ ଆସିବା ପୂର୍ବରୁ ମିସର, ସୁମେରିଆ ଆସିରିଆ ମେସୋପୋଟାମିଆ, ସିନ୍ଧୁନଦୀର ମୋହେନଜୋଦାରୋ, ହରପ୍ପା ପ୍ରଭୃତି ଅଞ୍ଚଳରେ ସାମ୍ରାଜ୍ୟମାନ ସ୍ଥାପିତ ହୋଇଥିଲା । ବଡ଼ ବଡ଼ ସାମ୍ରାଜ୍ୟମାନ ସ୍ଥାପିତ ହୁଏ, ସେତିକବେଳେ ଯେତେବେଳେ କି ମନୁଷ୍ୟ ସମାଜର ବହୁ ଲୋକଙ୍କର ସଂଗ୍ରହ ସଞ୍ଚୟ-ତୃଷ୍ଣା ଓ କ୍ଷମତାତୃଷ୍ଣା ଏହି ଦୁଇଟି ମଧ୍ୟରୁ କୌଣସି ଗୋଟିଏ ତୃଷ୍ଣା ମଥା ଟେକେ । ବୈଶ୍ୟ ବା କ୍ଷତ୍ରିୟ ସ୍ତର ଠେଲି ସମାଜ ଗତି

କଲବେଳେ ଏହି ସମ୍ରାଜ୍ୟ ବିସ୍ତାର ଓ ଉପନିବେଶ ସ୍ଥାପନର ଲାଳସା ଜନ୍ମେ । ବହୁଲୋକେ ବ୍ରାହ୍ମଣ୍ୟସ୍ତରକୁ ଆସିଥିଲେ, ଶୂଦ୍ର ବା ଶିଶୁସ୍ତରର ଅଦମ୍ୟ ଅନୁସନ୍ଧିତ୍ସା ଶକ୍ତିର ମାର୍ଜିତତର ଉନ୍ନତତର ପୂନର୍ବୃତ୍ତି ଘଟେ । ସଞ୍ଚୟ ସଂଗ୍ରହ ଓ କ୍ଷମତାତୃଷ୍ଣାର ମୂଳରେ ଯେଉଁ ପ୍ରକୃତି ବା ସ୍ୱଭାବ ରହିଥାଏ ତାହା ଯଜ୍ଞଦାନ ତପମୂଳକ ଆଚରଣରେ ରୂପାନ୍ତରିତ ହୋଇଯାଇ ସ୍ୱଧର୍ମ ପାଲଟିଯାଏ । ଅର୍ଥ ସଂଗ୍ରହ କରିବା, ସଞ୍ଚୟ କରିବା ପ୍ରଭୃତି ତୃଷ୍ଣାରେ ବୈଶ୍ୟର ଯେଉଁ ସ୍ୱଭାବ ଥାଏ, ତାହା ମାର୍ଜିତ ଶୋଧିତ ଓ ରୂପାନ୍ତରିତ ହୋଇ ସ୍ୱଧର୍ମରେ ପରିଣତ ହୁଏ । ଏହି ସ୍ୱଧର୍ମରେ ଅନୁପ୍ରାଣିତ ହୋଇ ବୈଶ୍ୟଭାବାପନ୍ନ ଲୋକେ ସେମାନଙ୍କ ଦ୍ୱାରା ନାନାଭାବରେ ଅର୍ଜିତ ହେଉଥିବା ଧନ ଓ ଅର୍ଥାଦିକୁ ସାରା ସମାଜର କଲ୍ୟାଣ ଓ ପୋଷଣରେ ଲଗାଇବାକୁ ମୁକ୍ତିପ୍ରଦ ମୋକ୍ଷଦାୟକ ଧର୍ମ ବୋଲି ଅନୁଭବ କରନ୍ତି । ଠିକ୍ ସେହିପରି କ୍ଷତ୍ରିୟର କ୍ଷମତାତୃଷ୍ଣାରେ ଯେଉଁ ଧନ ଯଶ ପ୍ରାପ୍ତିର ଲାଳସା ଥାଏ, ତାହା ତାର ସହଜାତ ସ୍ୱଭାବ ଅଟେ । ଏହି ସ୍ୱଭାବକୁ ମାର୍ଜିତ ଓ ବିଶୋଧିତ କରିଦେବାଦ୍ୱାରା ଏହା ସ୍ୱଧର୍ମ ପାଲଟେ । କ୍ଷମତା ତୃଷ୍ଣାଗ୍ରସ୍ତ କ୍ଷତ୍ରିୟ ତାର ସ୍ୱଭାବକୁ ସ୍ୱଧର୍ମରେ ରୂପାନ୍ତର କରିଦେବାଦ୍ୱାରା ତାର ସ୍ୱଧର୍ମ ଦୁର୍ବଳ ଦରିଦ୍ରର ରକ୍ଷଣ ଓ ପରିପୋଷଣରେ ବିନିଯୁକ୍ତ ହୁଏ । ଏହାର ଫଳରେ ବ୍ୟକ୍ତିଗତ ଭାବରେ କ୍ଷମତାତୃଷ୍ଣାର ମାର୍ଜିତତର ଏବଂ ଉନ୍ନତତର ତୃପ୍ତି ବିଧାନ ସାଧିତ ହୁଏ, ସମଗ୍ର ସମାଜର ବି ପରୋକ୍ଷରେ କଲ୍ୟାଣ ସାଧିତ ହୁଏ । ଯେଉଁ କ୍ଷମତାତୃଷ୍ଣାକୁ କେବଳ ମାତ୍ର ପରପୀଡ଼ନରେ ବା ଶତ୍ରୁର ଧ୍ୱଂସସାଧନ ଓ ଶତ୍ରୁ ରାଜ୍ୟର ଲୁଣ୍ଠନରେ ବିନିଯୋଗ କରିଯାଉଥାଏ, କ୍ଷତ୍ରିୟର ସେହି ଅମାର୍ଜିତ ସ୍ୱଭାବକୁ ତପ ଦାନ ଯଜ୍ଞକ୍ରିୟାରେ ବିନିଯୁକ୍ତ କରାଯାଇ ସ୍ୱଧର୍ମପାଳନରେ ରୂପାନ୍ତରିତ କରାଇଦିଆଯାଏ । ପରସ୍ୱାପହରଣ, ଲୁଣ୍ଠନ ଏବଂ ଶୋଷଣ ଏହି ତିନୋଟି ପ୍ରବୃତ୍ତି ସାମ୍ରାଜ୍ୟ ଏବଂ ଉପନିବେଶ ପ୍ରତିଷ୍ଠାର କାରଣ

ନ ହୋଇ କୌଣସି ମହାନ୍ ଭାବର ବିତରଣ, ପ୍ରସାର; କିମ୍ବା ନୂଆ ନୂଆ ଭାବର ଆଦାନପ୍ରଦାନ, କିମ୍ବା କୀର୍ତ୍ତିସ୍ଥାପନ, ଏହା ସାମ୍ରାଜ୍ୟ-ଉପନିବେଶ ସ୍ଥାପନର ମାର୍ଜିତତର ହେତୁ ହୋଇଯାଏ । ମହାବୀର ଆଲେକଜାଣ୍ଡର, ଓ ନେପୋଲିଅନଙ୍କ ବିଜୟାଭିଯାନରେ ଦୁଇ ଭାର ପ୍ରବୃତ୍ତିଙ୍କର କ୍ଷମତା ପ୍ରବୃତ୍ତିରେ ମାର୍ଜିତତର ରୂପାନ୍ତର ଘଟିଥିଲା । ଶୋଷଣ, ସଞ୍ଚୟ, ସଂଗ୍ରହ ପରସ୍ୱାପହରଣ, ପୀଡ଼ନ, ଲୁଣ୍ଠନ ପ୍ରଭୃତି ଅର୍ଥତୃଷ୍ଣା ଓ କ୍ଷମତାତୃଷ୍ଣାର ଏହିପରି ରୂପାନ୍ତର ଘଟିବାରୁ ସମାଜରେ ସାମ୍ୟ ଶାନ୍ତି, ମୈତ୍ରୀର ପୁନଃ ପ୍ରତିଷ୍ଠା ଘଟିଥାଏ । ସ୍ୱୟଂ ଶାସିତ ଗ୍ରାମ୍ୟ ସମାଜରେ ଯେଉଁସବୁ ଦୋଷ, ତ୍ରୁଟି ବାଧାବିଘ୍ନ ଆସି ଉପୁଜିଯାଏ, ସେଗୁଡ଼ିକୁ ଏହିପରି ବାରମ୍ବାର ସୁଧାରି ନିଆଯାଏ । ଭାରତର ଗ୍ରାମ୍ୟ ସମାଜରେ ଏହି ସୁଧାରିବାର କାମଟି ବାରମ୍ବାର ଚାଲିଆସୁଛି ।

ମାର୍ଜିତ ଓ ବୈଜ୍ଞାନିକ କମ୍ୟୁନିଜିମର ଭାବନା କେବଳ ମାତ୍ର ମାର୍କସ୍‌ଙ୍କ ଲେଖାମାନରୁ ବାହାରି ନାହିଁ କିମ୍ବା ଇତିହାସରେ ପ୍ରଥମଥର ପାଇଁ ମହାମତି ଲେନିନ ଏହାକୁ ରୁଷିଆରେ ଥାପି ନାହାନ୍ତି । ମାର୍କସ୍ ଲେନିନଙ୍କ ବହୁ ପୂର୍ବରୁ ରୁଷିଆର ଲାଲସେନା ସୁରକ୍ଷିତ କମ୍ୟୁନିଜିମ ଠାରୁ ଉନ୍ନତତର ଏବଂ ଅଧିକତର ମହାଯାନ୍ ସାମ୍ୟ, ଶାନ୍ତି, ମୈତ୍ରୀର ସମାଜ ଭାରତ ଓ ଚୀନର ଗ୍ରାମେ ଗ୍ରାମେ ହଜାର ହଜାର ବର୍ଷ ଧରି ପ୍ରତିଷ୍ଠିତ ହୋଇଛି । ଏହି ସମାଜ ମଣିଷରେ ମଣିଷରେ ଯେଉଁ ସମସ୍ୟା ସବୁର ସମ୍ମୁଖୀନ ହୋଇଛି ପ୍ରଥମ ଶ୍ରେଣୀର ସର୍ବତ୍ୟାଗୀ ଜ୍ଞାନୀଜନଙ୍କର ନିରବଚ୍ଛିନ୍ନ ପ୍ରବାହ ରହିଥିବାରୁ ଏହି ପ୍ରବାହରୁ ଗୋଟିଏ ଗୋଟିଏ ଅତିମାନସ ଶକ୍ତିର ବୁଦ୍ଧ, ଶଙ୍କର, ନାନକ, ତୁଳସୀଦାସ, ତୁକାରାମ, ସମର୍ଥ ରାମଦାସ, ରାମକୃଷ୍ଣ ପରମହଂସ, ଗାନ୍ଧୀ, ବିନୋବା, ଅରବିନ୍ଦ

ଅବତୀର୍ଣ୍ଣ ହୋଇ ଏହିସବୁ ସମସ୍ୟାର ସମାଧାନ ପନ୍ଥା ଦେଖାଇ ଦେଇ ସମାଜରେ ବାରମ୍ବାର ସୁଧର୍ମ ପ୍ରତିଷ୍ଠା କରି ଯାଇଛନ୍ତି । କଥା ହେଉଛି ୧୮ଶ ଶତାବ୍ଦୀରୁ ଯେଉଁ ଯାନ୍ତ୍ରିକ ଶିଳ୍ପର ବିକାଶ ଘଟିଲ, ତାହାରି ଫଳରେ ସ୍ୱୟଂଶାସିତ ସ୍ୱାବଲମ୍ବୀ ଗ୍ରାମରାଜ୍ୟଗୁଡ଼ିକର କୁଟିରଶିଳ୍ପ ସଂସ୍ଥାଗୁଡ଼ିକ ଧ୍ୱଂସ ଘଟିଛି । ଭାରତର ଗ୍ରାମ୍ୟ ସମାଜ ଯେଉଁ ଅଭୂତପୂର୍ବ ସମସ୍ୟାମାନଙ୍କର ସମ୍ମୁଖୀନ ହୋଇଛି, ସମାଜ ଜୀବନରେ ଯେଉଁ ଧର୍ମଗ୍ଲାନି ଓ ସଙ୍କଟ ଦେଖା ଦେଇଛି, ସେହିସବୁ ସମସ୍ୟାର ସମାଧାନ କରିବାକୁ, ସେହିସବୁ ଧର୍ମଗ୍ଲାନି, ସଙ୍କଟ ଓ ଦୁଷ୍କୃତମାନଙ୍କୁ ଧ୍ୱଂସ କରି ସୁଧର୍ମ ପ୍ରତିଷ୍ଠା କରିବାକୁ ଭାରତୀୟ ସମାଜର ସମଷ୍ଟିଗତ ଚେତନାରେ ଯେଉଁ ପ୍ରବଳ ଆସ୍ପୃହା, ଆବେଗ ଓ ବ୍ୟାକୁଳତା ଲୋଡ଼ା, ଦୁଷ୍କୃତ ଓ ଧର୍ମଗ୍ଲାନିର ଧ୍ୱଂସପାଇଁ ଯେଉଁ ଐକାନ୍ତିକ ଦୃଢ଼ତା ଓ ନିଷ୍ଠା ଲୋଡ଼ା ସେସବୁର ପ୍ରକାଶ ଅବ୍ୟାହତ ଭାବେ ଧୀର ମନ୍ଥର ଗତିରେ ଚାଲିଛି । କଂଗ୍ରେସର ବିଭାଜନ ପରେ ଇନ୍ଦିରାଗାନ୍ଧୀଙ୍କ ସ୍ୱଚ୍ଛନ୍ଦ ଯାବିମୁକ୍ତ ଅପ୍ରତିଦ୍ୱନ୍ଦ୍ୱୀ ବଳିଷ୍ଠ ନେତୃତ୍ୱର ପରିପ୍ରକାଶ; ତାଙ୍କଦ୍ୱାରା ପ୍ରତିଶ୍ରୁତି ୨୪ ଦଫା ସମ୍ବଳିତ ଅର୍ଥନୈତିକ କାର୍ଯ୍ୟକ୍ରମ, ସ୍ୱୟଂଶାସିତ ସ୍ୱାବଲମ୍ବୀ ଗ୍ରାମରାଜ୍ୟର ପୁନଃପ୍ରତିଷ୍ଠାରେ ଗାନ୍ଧୀ ବିନୋବାଙ୍କ ଅଭ୍ରାନ୍ତ ମାର୍ଗ ଦର୍ଶନ, କେନ୍ଦ୍ର ଓ ପ୍ରାଦେଶିକ ଅଧିକାରିଙ୍କଦ୍ୱାରା ଭୂମି ବିତରଣ ବ୍ୟବସ୍ଥା ଏବଂ ମଞ୍ଜୁରିପ୍ରାପ୍ତ ଗ୍ରାମଦାନ ଆଇନ, ଗ୍ରାମ୍ୟ ସମାଜର ସାମ୍ୟ ଶାନ୍ତି ମୈତ୍ରି ର ଭିତ୍ତିକୁ ଦୋଷମୁକ୍ତ କରିବାରେ ଆଗେଇଛି । ଶ୍ରୀମା' ଶ୍ରୀ ଅରବିନ୍ଦଙ୍କ ସଂସ୍ଥା ତରଫରୁ ଭାରତବ୍ୟାପୀ ପାଠଚକ୍ରର ପ୍ରସାର, ସତ୍ୟସାଇ ବାବାଙ୍କ ଭାରତବ୍ୟାପୀ ଭଜନମଣ୍ଡଳି, ଠାକୁର ଅନୁକୂଳଚନ୍ଦ୍ର ଏବଂ ନିଗମାନନ୍ଦ ପ୍ରଭୃତି ବହୁ ସାଧୁସନ୍ଥ ଏବଂ ସନ୍ଦର୍ଭାର୍ଥୀ ଜନମାନଙ୍କର ଭାରତରେ ଧର୍ମଚକ୍ର ପ୍ରବର୍ତ୍ତନପାଇଁ ଅବ୍ୟାହତ ଅଭିଯାନରୁ ସ୍ପଷ୍ଟ ସୂଚନା ମିଳୁଛି ଯେ

ଭାରତ ଆଜି ସେହି ଦିବ୍ୟ ଲକ୍ଷ୍ୟ ଆଡ଼କୁ ମୁହାଇଁ ଯାଉଛି, ଯେଉଁ ଲକ୍ଷ୍ୟରେ ପହଞ୍ଚିବାକୁ ବୁଦ୍ଧ, ଯିଶୁ, ଗାନ୍ଧି, ଅରବିନ୍ଦ ଓ ଶ୍ରୀମାଆଙ୍କ ଅମର ଆତ୍ମା ସ୍ୱର୍ଗରୁ ଥାଇ ଭାରତର ଅନ୍ତରାତ୍ମାକୁ ବାଟ କଢ଼ାଇ ନେଇ ଯାଉଛନ୍ତି ।

ଶୂଦ୍ରର ବ୍ରାହ୍ମଣ ସହିତ, ଏବଂ ବୈଶ୍ୟର କ୍ଷତ୍ରିୟ ସହିତ ଆପାତ ସାଦୃଶ୍ୟ ରହିଛି, ଠିକ୍ ଯେପରି ଶିଶୁର ବୃଦ୍ଧ ସଙ୍ଗରେ ଏବଂ ଅବିବାହିତ ସଂସାର ଦାୟିତ୍ୱରେ ଭାରଗ୍ରସ୍ତ ଯୁବକ ସହିତ, ପୁତ୍ର କନ୍ୟା ପରିବାର ଜଞ୍ଜାଳର ଘେରରେ ପଡ଼ିଥିବା ପ୍ରୌଢ଼ର ଆପାତ ସାଦୃଶ୍ୟ ରହିଛି । ଶୂଦ୍ର ଓ ବ୍ରାହ୍ମଣ ଉଭୟେ ପ୍ରକୃତିର ସନ୍ତାନ । ଆନନ୍ଦଦାୟକ, ବିସ୍ମୟକର ଓ ଭୟଙ୍କର ବସ୍ତୁ ଦର୍ଶନରେ ଉଭୟଙ୍କର ଜିଜ୍ଞାସା ଜାଗି ଉଠେ । ଉଭୟଙ୍କଠି ସୃଷ୍ଟି ଓ ସଂହାରର ପ୍ରଚ୍ଛନ୍ନ ଶକ୍ତି ନିହିତ ଥାଏ । ଉଭୟ ନିର୍ବିକାର ଓ ନିର୍ଦ୍ୱନ୍ଦ୍ୱ । କାଲିକି କଣ ଖାଇବି ଦୁଶ୍ଚିନ୍ତାରୁ ଉଭୟେ ମୁକ୍ତ । ଧନ ସଂଚୟ ସଂଗ୍ରହର ତୃଷ୍ଣା ଏବଂ ପ୍ରଭୁତ୍ୱ ଜାହିର କରିବାର ତୃଷ୍ଣାରୁ ଉଭୟ ମୁକ୍ତ । ସ୍ୱଚ୍ଛନ୍ଦ ବନଜାତ ଫଳମୂଳ ଉଭୟଙ୍କର ଆହାର ସାମଗ୍ରୀ । ପରକୁଡ଼ିଆ ଉଭୟଙ୍କର ବାସସ୍ଥାନ । ମୂଲ ଲାଗି ପେଟ ପୋଷୁଥିବା ଏକ ନାଗାବାଗା ମୂଲିଆ; ସାରା ବସୁଧାକୁ କୁଟୁମ୍ବ ଜ୍ଞାନ କରୁଥିବା ଗୋଟିଏ ଅଧ ଲଙ୍ଗଳା ଉଦରପାଳ ବ୍ରାହ୍ମଣ ଉଭୟ ଏକ ଏକ ଖାଣ୍ଟି କମ୍ୟୁନିଷ୍ଟ । ପ୍ରଭେଦ ଏତିକି ଯେ ଜଣେ ଅଜ୍ଞାନ ଶିଶୁର ସ୍ତରରେ ଥାଏ; ଆଉ ଜଣେ ବହୁ ଜ୍ଞାନ ଅନୁଭୂତିରେ ପରିପକ୍ୱତା ଅର୍ଜନ କରିଥିବା ବୃଦ୍ଧର ସ୍ତରରେ ଥାଏ ।

ନିରସ୍ୱ ଜନମା ପରିବାରର ଅନ୍ତରାଳରେ ରହି ତାର ବଳିଷ୍ଠ ସ୍ୱାମୀକ ଅବ୍ୟଭିଚାରିଣୀ ଭକ୍ତି ଓ ନିଷ୍କାମ ସେବାଦ୍ୱାରା ଆପୁତ

କରିବାପରେ ଶୂଦ୍ର ତାର ନିଷ୍କାମ ସେବା ଓ ଦାୟିତ୍ୱଜ୍ଞାନ ଅକୁଣ୍ଠ କର୍ତ୍ତବ୍ୟ ପାଳନ ଦ୍ୱାରା ଏବଂ ବ୍ରାହ୍ମଣ ତାର ଜ୍ଞାନବିଜ୍ଞାନ ଶକ୍ତି, ତାର ନିର୍ଭୀକତା, ନିଷ୍ପୃହତା, ତାର ନିର୍ବୈରତା ଓ ନିର୍ଦ୍ୱନ୍ଦ୍ୱତା, ତାର ସତ୍ୟନିଷ୍ଠା ଏବଂ ଅହିଂସାଦ୍ୱାରା ସଂରକ୍ଷ ସଂଗ୍ରହକାରୀ ବୈଶ୍ୟକୁ ଓ ସାମ୍ୟ, ଶାନ୍ତି ମୈତ୍ରୀ ପ୍ରତିଷ୍ଠାକାରୀ କ୍ଷତ୍ରିୟକୁ ନିୟନ୍ତ୍ରିତ କରନ୍ତି । ବିପ୍ଳବୀ ଶୂଦ୍ର ଏବଂ ସ୍ୱସଂଶାସିତ ବୈରାଗ୍ୟ ଚେତନାଶୀଳ ବ୍ରାହ୍ମଣ ଦୁହେଁ ଯାକ ସମାଜରୂପୀ ସହସ୍ରଶୀର୍ଷା ବିରାଟ ପୁରୁଷଙ୍କର ଯୋଡ଼ିଏ ପ୍ରାନ୍ତରେ ଥିବା ଦୁଇଟି ଅଙ୍ଗ ଅଟନ୍ତି । ଶୂଦ୍ର ଯେମିତି ଏହି ପୁରୁଷର ପାଦ ଏବଂ ତାଙ୍କର ମୁଖ ଅଟେ । ଧନ ଓ କ୍ଷମତାଶାଳୀ ବ୍ୟକ୍ତିଙ୍କ ପାଖରେ ମଥାନତ ନ କରିବାର ଯେଉଁ ବ୍ରହ୍ମତେଜ ଓ ଆତ୍ମଶକ୍ତି, କଠୋର ସାଧନା ଓ ତପସ୍ୟା ଦ୍ୱାରା ବ୍ରାହ୍ମଣ ହାସଲ କରେ, ସେ ସେହି ଶକ୍ତିବଳରେ ତାର ସାର୍ଥୀ ଶୂଦ୍ରକୁ କୌଣସି ପ୍ରକାର ଅଧିକାର ଓ ଫଳାଶାରେ ଦାବୀ ନ ରଖି ନିଷ୍କାମ ଭାବରେ ସମଷ୍ଟିର ସେବା କରିବାକୁ ଏବଂ ଶାନ୍ତିମୟ କ୍ରାନ୍ତିରେ ଆଗେଇ ଯିବାକୁ ଉଦ୍‌ବୁଦ୍ଧ କରେ; ସେ ବୈଶ୍ୟ ପ୍ରକୃତିର ଲୋକଙ୍କର କ୍ଷମତାତୃଷ୍ଣା ଦୁଇଟିର ମୂଳରେ ଥିବା ଅମାର୍ଜିତ ସ୍ୱଭାବ ଯୋଡ଼ିଙ୍କର ମୋଡ଼ ବଙ୍କାଇ ଦେଇ ଉଭୟଙ୍କ ସ୍ୱଭାବକୁ ସଂଶୋଧିତ କରିଦେଇ ସ୍ୱଧର୍ମରେ ରୂପାନ୍ତରିତ କରିନିଏ ଏବଂ ସେମାନଙ୍କୁ ସମାଜର ମଙ୍ଗଳରେ ନିୟୁକ୍ତ କରେ ।

ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ କୃଷି, ବାଣିଜ୍ୟ, ଓ ପଶୁପାଳନ ବ୍ୟବସ୍ଥା ଯେ ଖୁବ୍ ଉନ୍ନତ ଥିଲା । ଏହା ମହେଞ୍ଜୋଦାରୋ ଓ ହରପ୍ପାରେ ଖୋଦିତ ସିନ୍ଧୁ ସଭ୍ୟତାର ଧ୍ୱଂସାବଶେଷରୁ ଜଣାଯାଏ । ସମାଜର ଭିତ୍ତି ସାମ୍ୟ ମୈତ୍ରୀ ଉପରେ ପ୍ରତିଷ୍ଠିତ ଥିଲେ ବି ନୂତନ ଭୂସ୍ୱତ୍ୱଗତ ପରିବାରର ସୃଷ୍ଟି ଏବଂ ଏହି ପରିବାରର ରକ୍ଷଣ ଦାଗ

ସମ୍ପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା ଢ଼ ଆସିଲେ । ଏହାର ଫଳରେ କାଳକ୍ରମେ ନାନାବୈଷମ୍ୟ ମଧ୍ୟ ଦେଖାଦେଲା; ଗ୍ରାମ୍ୟ ସମାଜର ଭାରସାମ୍ୟ ଦୋହଲି ଯିବାକୁ ବସିଲା । ଫଳରେ ଭୂମି ଉପରୁ ବ୍ୟକ୍ତିଗତ ମାଲିକାନାକୁ ଲୋପ କରାଯାଇ ଏହି ମାଲିକାନାକୁ ସାମୂହିକ ଭାବରେ ଗ୍ରାମ-ରାଜ୍ୟର ମାଲିକାନାକୁ ଅଣାଗଲା; ବେଦ ବା ଉପନିଷଦ ଯୁଗର ଭାରତରେ କୌଣସି ରାଜ୍ୟ କହିଲେ ଗୋଟିଏ ଗୋଟିଏ ଗ୍ରାମକୁ ହିଁ ବୁଝାଉଥିଲା । ଗ୍ରାମର ମୁଖ୍ୟ ବା ଦଳପତିଙ୍କୁ ରାଜା ବା ନୃପତି କୁହାଯାଉଥିଲା । ଗାଆଁର ଜମିଗୁଡ଼ିକ ଏହି ରାଜାଙ୍କ ନାମରେହିଁ ରହିଥିବ; ଏହି କାରଣରୁ ତାଙ୍କୁ ଭୂ-ପତି, ପୃଥିବୀପତି, ଭୂପ ପ୍ରଭୃତି ନାମରେ ଋକ୍‌ବେଦ ପ୍ରଭୃତିରେ ନାମିତ କରାଗଲା । ଏହି ଗ୍ରାମ୍ୟରାଜ୍ୟ-ଗୁଡ଼ିକ ଉପରେ ଯେତେବେଳେ ବଡ଼ ବଡ଼ ସାମ୍ରାଜ୍ୟ ସ୍ଥାପିତ ହେଲା, ଯେଉଁ ଚିତ୍ର କି ମହାଭାରତରେ ଦେଖିବାକୁ ମିଳେ, ପୁଣି ମୌର୍ଯ୍ୟ ସାମ୍ରାଜ୍ୟ, ଗୁପ୍ତସାମ୍ରାଜ୍ୟ ସମ୍ପର୍କରେ ଇତିହାସରୁ ଯେଉଁ ତଥ୍ୟ ମିଳେ, ସେଥିରୁ ସ୍ପଷ୍ଟ ଭାବରେ ଜଣାଯାଏ ଯେ ସାମ୍ରାଜ୍ୟ ପ୍ରତିଷ୍ଠା ଦ୍ୱାରା ଗାଆଁର ସାମୂହିକ ମାଲିକାନାକୁ ଗାଁଆଠୁ କାଢ଼ିନେଇ ସମ୍ରାଟ ବା ଚକ୍ରବର୍ତ୍ତୀମାନେ ଗ୍ରାମର ସ୍ୱୟଂସିଦ୍ଧ ଅର୍ଥନୀତି କି ନିଜ ନିଜ ନିୟନ୍ତ୍ରଣରେ ରଖିବାକୁ ବ୍ୟର୍ଥ ଚେଷ୍ଟା କରିନାହାନ୍ତି । ଭୂ-ପତି, ଭୂପ, ପୃଥିବୀ-ପତି ଶବ୍ଦରୁ ପରିଷ୍କାର ଜଣାଯାଉଛି ଯେ ଭାରତରେ ଗ୍ରାମ୍ୟ-ରାଜ୍ୟଗୁଡ଼ିକର ଜମିର ସାମୂହିକ ମାଲିକାନା ପ୍ରତି ଗ୍ରାମର ଦାୟିତ୍ୱରେ ଥିଲା ଏବଂ ମାଲିକାନାର ରକ୍ଷକ ଓ ଟ୍ରଷ୍ଟି ଥିଲେ ସମ୍ରାଟ, ଚକ୍ରବର୍ତ୍ତୀ ଓ ସେମାନଙ୍କର ଅଧୀନସ୍ଥ ସାମନ୍ତ ନୃପତିମାନେ । ଗ୍ରାମପଞ୍ଚାୟତ ସମ୍ଭବତଃ ବର୍ଷକୁ ବର୍ଷ ବା ନିର୍ଦ୍ଦିଷ୍ଟ ସମୟରେ ବ୍ୟବଧାନରେ ଗ୍ରାମର ଲୋକଙ୍କ ଭିତରେ ଚାଷ କରିବାକୁ ଗାଁର ଜମିଗୁଡ଼ିକୁ ବାଣ୍ଟି ଦେଉଥିଲେ । ମୁସଲମାନ ଶାସନବେଳରୁ ସମ୍ଭବତଃ ଗ୍ରାମ ସ୍ୱରାଜ୍ୟ-

ଗୁଡ଼ିକରେ କେଉଁ ଜମି ଓ କେତେ ଜମି ଚାଷ କରୁଥିଲା, ସେହି ନମ୍ବିଗୁଡ଼ିକର ମଝିରେ ମଝିରେ ପୁନର୍ବଣ୍ଟନ କାମ ପଞ୍ଚାୟତମାନେ ନିର୍ଦ୍ଦିଷ୍ଟ ସମୟରେ କରିବାକୁ ଠିକ୍ କରିଦେଲେ । ସମ୍ରାଟ ଶେରସାହା ଓ ଆକବରଙ୍କ ଅମଳରୁ ପଟ୍ଟା ପାଉତି ଦଲିଲ ପତ୍ରାଦିର ପ୍ରଚଳନ ଆସିଲା । ଏହାଦ୍ୱାରା ଗାଁର ଜମି ସବୁକୁ କର୍ଷଣକୁ ବା ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ବାଣ୍ଟି ନେଇ ଯେଉଁ ଚାଷ ଗାଁଲୋକେ କରୁଥିଲେ, ପଟ୍ଟା ପାଉତି ଖତିଆନ ଆସିବାରୁ ଏସବୁ ଜମିରେ ସେମାନଙ୍କ ବ୍ୟକ୍ତିଗତ ମାଲିକାନା ରହିଛି ବୋଲି ଭ୍ରମ ଧାରଣା ଆସିଗଲା । ଗାଁମାନଙ୍କରେ କିଏ କେଉଁ ଜମି ଓ କେତେ ଜମି ଚଷୁଛି ତାର ଏକ ହିସାବ ଓ ରେକର୍ଡ ରଖିବାକୁ ଶେରସାହା ଏବଂ ଆକବର ପଟ୍ଟା ଖତିଆନ ପ୍ରଭୃତିର ବ୍ୟବସ୍ଥା କରିଥିଲେ, ମାତ୍ର ସମୂହିକ ମାଲିକାନାକୁ ଖତମ କରିଦେବା ବା ଗ୍ରାମ-ସ୍ୱରାଜ୍ୟର ଅଟ୍ଟାଳିକାକୁ ଭାଙ୍ଗିଦେବା ସେମାନଙ୍କର ଉଦ୍ଦେଶ୍ୟ ନ ଥିଲା । ଇଂରେଜ ଶାସନରେ କୋର୍ଟ କଚେରିଖାନା ଆସିଲା; ଓକିଲ, ଗୁମାସ୍ତା ବାହାରିଲେ ମକଦ୍ଦମା କମିତି ଗାରେ ବଢ଼ିବ, ଟାଉଟର ବି ମନକୁ ମନ ବାହାରିଲା ଗାଁର ଜମିଜମା ପୁଣି ସ୍ଥିର ହୋଇଗଲା । ଗାଁର ସବୁ ଜମି ଯେ ଭୂପ, ଭୂପତି ବା ପୃଥିବୀ-ପତିର । କାଣିରେ ଜମି ଯେ କାହାରି ବ୍ୟକ୍ତିଗତ ବୋଲି କୌଣସି ପୁରାଣ ଶାସ୍ତ୍ର, ମନୁ, ପରାଶରରେ ବି ନାହିଁ, ଏହା ଲୋକେ ଭୁଲିଗଲେ ।

---

# ସପ୍ତମ ଅଧ୍ୟାୟ

## କ୍ଷମତା ତୃଷ୍ଣା ଏବଂ ସଞ୍ଚୟ ତୃଷ୍ଣା ମଧ୍ୟରେ ପ୍ରାଣମୂର୍ଚ୍ଛା ସଂଘର୍ଷ

( ଖ୍ରୀ: ପୂ: ୪୦୦ ରୁ ଖ୍ରୀ: ପ. ୬୦୦ )

ତୃତୀୟ ସ୍ତର ଅର୍ଥାତ୍ ଚାଷି ସ୍ତର କୃଷକ ସମାଜ ଉପରେ ଯାଯାବର ପଶୁପାଳକ ଆର୍ଯ୍ୟଜାତିର ଅଭିଯାନ କାଳରୁ ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ତରଙ୍ଗ ପରେ ତରଙ୍ଗ ପରି ବ୍ୟାପିଥିଲା ବୋଲି ମୋର ମତ । ଭାରତ ଓ ଚୀନ ଦେଶରେ ଆହାର ପ୍ରାଚୁର୍ଯ୍ୟ ତଥା କୃଷିଉପଯୋଗୀ ଉର୍ବର ମାଟି ଥିବାରୁ ଏହି ଦୁଇ ଅଞ୍ଚଳର ଲୋକଙ୍କଠିଁ ଯୁଦ୍ଧ ପ୍ରତି ଘୃଣା ଆସିଗଲା । ଏଣୁ ରଜା ରଜା ଭିତରେ ଯୁଦ୍ଧ ଲାଗିଗଲାବେଳେ ସାଧାରଣ ଜନତାର ଜୀବନଯାପନରେ କିଛି ଆଞ୍ଚ ଆସୁ ନ ଥିଲା ।

ବେଦ ଉପନିଷଦ, ଭାଗବତ, ଏବଂ ମହାଭାରତରେ ଯେଉଁ ସ୍ୱରାଜ୍ୟ (ସ୍ୱ-ଶାସନ) ଶବ୍ଦର ପୁନଃପୁନଃ ପ୍ରୟୋଗ ହୋଇଛି, ଯେଉଁ ସୈନ୍ୟସାମନ୍ତ ଓ ହାତହତିଆରଶୂନ୍ୟ ସ୍ୱୟଂ-ଶାସିତ ଗ୍ରାମରାଜ୍ୟର ହୃଦୟ-ଉନ୍ମୋଚକ ଚିତ୍ରର ପରିବେଷଣ କରାଯାଇଛି, ସେଥିରୁ ଏହାହିଁ ସାବ୍ୟସ୍ତ ହେଉଛି ଯେ କୌଣସି ଜାତି ବା ସମାଜ ପକ୍ଷେ ଏହି ସ୍ୱରାଜ୍ୟ,

ସ୍ୱ-ଶାସନ ବା ସ୍ୱୟଂ ନିୟନ୍ତ୍ରଣର ବ୍ୟବସ୍ଥାକୁ ବାସ୍ତବ କ୍ଷେତ୍ରରେ ତାର ଗ୍ରାମ୍ୟଗୁଡ଼ିକରେ ସଫଳତାର ସହିତ ପ୍ରୟୋଗ କରେ, ତେବେ ଅତୀତ ଯୁଗର ଅମାର୍ଜିତ କମ୍ୟୁନିଜମ୍ ଠାରୁ ଅଧିକତର ଚେତନାଶୀଳ ଏବଂ ବିଜ୍ଞାନସମ୍ମତ ସାମ୍ୟମୈତ୍ରୀ ପ୍ରେମଭିତ୍ତିକ ସାମ୍ୟବାଦର ସମ୍ପ୍ରସାରଣ ହୁଏ । ମଣିଷରେ ଅନୁସନ୍ଧାନ କରିବାର ଶକ୍ତି ଧନସଞ୍ଚୟ, ପରସ୍ୱହରଣ ଏବଂ କ୍ଷମତା ଅପପ୍ରୟୋଗରେ ଅପବ୍ୟୟିତ ନ ହୋଇ ସମାଜର ସମୁହ କଲ୍ୟାଣ ପାଇ ତ୍ୟାଗମୂଳକ ସେବାରେ ରୂପାନ୍ତର ହୁଏ । ଭାରତ ଓ ଚୀନର ଗ୍ରାମ୍ୟସମାଜ ଏହି ସମୂହ ସେବାର ଭିତ୍ତିଭୂମି ଉପରେ ହିଁ ଗଢ଼ି ଉଠିଥିଲା ।

କୃଷକ ସମାଜ ଉପରେ ଯାଯାବର ପଶୁପାଳକମାନଙ୍କ ଆକ୍ରମଣ ୧୫ଶ ଶତାବ୍ଦୀର ତୁର୍କ-ମଙ୍ଗୋଲମାନଙ୍କ ଅଭିଯାନ ପର୍ଯ୍ୟନ୍ତ ଲାଗି ରହିଥିଲେ ବି ଏହାର ତୀବ୍ରତା ଖ୍ରୀ: ପୂ: ୬୦୦ରୁ କମିଯାଇଥିବ ବୋଲି ମୋର ମତ ।

ଖ୍ରୀ: ପୂ: ୬୦୦ରୁ ଖ୍ରୀ: ଅ: ୬୦୦ ଏହି ୧୦୦୦ ବର୍ଷକୁ ମୁଁ ପୃଥିବୀ ଇତିହାସର ଏକ ଉଜ୍ଜ୍ୱଳତମ ଯୁଗ ବୋଲି କହିବି । ଏହି ଯୁଗର ଆଗମନର ବହୁ ପୂର୍ବରୁ ବହୁ ଅଜ୍ଞାତ ଜ୍ଞାତ ଜ୍ଞାନୀ ବ୍ୟକ୍ତିଙ୍କର ବାଣୀକୁ ଶିଷ୍ୟ ପରମ୍ପରାକ୍ରମେ କେବଳ ଶୁଣି ଶୁଣି ନିର୍ଭୁଲ ଭାବରେ ମନେ ରଖାଯାଇ ପାରୁଥିଲା । ସେହି ଅମୃତମୟ ଧ୍ରୁବ ବାଣୀକି ଏହି ହଜାରେ ବର୍ଷ ମଧ୍ୟରେ ଜନ୍ମଲାଭ କରିଥିବା ଅସାଧାରଣ ଜ୍ଞାନୀମାନେ ସଫଳ ଭାବରେ ପ୍ରୟୋଗ କଲେ । ଭାରତର ବହୁ ଅଜ୍ଞାତ ଜ୍ଞାତ ଋଷି-ମୁନିଙ୍କର ପ୍ରତ୍ୟକ୍ଷାନୁଭୂତିର ବାଣୀ ବେଦ ବେଦାନ୍ତ ଉପନିଷଦ ଆକାରରେ ରହିଛି । ଇହୁଦୀମାନଙ୍କର ଆବ୍ରାହାମ, ଯୋଷେଫ, ସୋଲମନ ପ୍ରଭୃତି ଜ୍ଞାନୀଙ୍କ ମୁଖନିଃସୃତ ବାଣୀ ସେମାନଙ୍କର ଧର୍ମଗ୍ରନ୍ଥ

ଓଲ୍ଡ଼୍ ଟେଷ୍ଟାମେଣ୍ଟରେ ରହିଛି । ଗ୍ରୀସରେ ସକ୍ରେଟିସ୍, ପ୍ଲାଟୋ, ଆରିଷ୍ଟୋଟଲ, ଭାରତରେ ମହାବୀର, ବୁଦ୍ଧ, ଇସ୍ରାଏଲରେ ଯୀଶୁ, ଚୀନରେ କନ୍‌ଫୁସିଅସ, ଲାଓସି, ଆରବରେ ମହାପୁରୁଷ ମହମ୍ମଦ ଓ ଭାରତରେ ଆଚାର୍ଯ୍ୟ ଶଙ୍କର ଖ୍ରୀ: ପୂ: ୬୦୦ରୁ ୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ପୃଥିବୀର ବିଭିନ୍ନ ଅଞ୍ଚଳରେ ଏକ ଏକ ଉଜ୍ଜଳ ଜ୍ୟୋତିଷ୍କ ଭାବରେ ଦେଖା ଦେଇଥିଲେ । ଉପନିଷଦରେ ଆତ୍ମଜ୍ଞାନ, ବିଜ୍ଞାନ, ବିଦ୍ୟା ଅବିଦ୍ୟା ଉଭୟ ଉପରେ ଜୋର ଦେବାକୁ ଋଷିମାନେ କହିଗଲେ ବି ଖ୍ରୀ: ପୂ: ୬୦୦ରୁ ୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ଆବିର୍ଭୂତ ହୋଇଥିବା ଜ୍ଞାନୀମାନେ କେବଳ ଆତ୍ମଜ୍ଞାନ ବା ଉତ୍ତର ଦୁନିଆ ନେଇ ଚର୍ଚ୍ଚା କରିଥିଲେ ଏବଂ ଅତୀତ ଯୁଗର ଉପନିଷଦର ବାସ୍ତବିକ ବ୍ୟାଖ୍ୟାନ କରିଥିଲେ ।

ଖ୍ରୀ: ପୂ: ୪୦୦୦ରୁ ଖ୍ରୀ: ପୂ: ୬୦୦ ଏହି ସାଢ଼େ ତିନିହଜାର ବର୍ଷ ମଧ୍ୟରେ, କୃଷକ ସମାଜ ଉପରେ ଯାଯାବର ଜାତିମାନଙ୍କର ବାରମ୍ବାର ପ୍ରଚଣ୍ଡ ଆକ୍ରମଣରୁ କେତେ ସାମ୍ରାଜ୍ୟ ଗଢ଼ିଉଠି ପୁଣି ଭାଙ୍ଗି ଯାଇଥିଲା । ଲୋକଙ୍କର ସହଯୋଗ ପ୍ରବୃତ୍ତି ଓ ସହଯୋଗ ସଂଗଠନ ବ୍ୟବସ୍ଥାକୁ ଧ୍ୱଂସ କରି ରୂପାନ୍ତର ଘଟାଇବାକୁ ମଙ୍ଗଳମୟଙ୍କ ପ୍ରଚ୍ଛନ୍ନ ନିର୍ଦ୍ଦେଶ ଓ ଇଙ୍ଗିତରେ ସମାଜ ଜୀବନରେ ତୀବ୍ର ସମତାତୃଷ୍ଣା ଓ ଜୀବ ଜାଗ୍ରତ ଜାଗରଣ ହେଲା । ଅନୁରୂପ ଅଞ୍ଚଳମାନଙ୍କରେ ବାସ କରୁଥିବା ଭେକିଲ୍ ଗୋପାଳକ ଆର୍ଯ୍ୟଜାତିର ଲୋକେ ଭାରତର ସିନ୍ଧୁ ନଦୀ ଅଞ୍ଚଳକୁ ସୁସଭ୍ୟ ଦ୍ରାବିଡ଼ଙ୍କଠାରୁ ଛଡ଼ାଇନେଇ ସେମାନଙ୍କୁ ଦକ୍ଷିଣକୁ ତଡ଼ିଦେଲେ । ଆର୍ଯ୍ୟଜାତିର ଗୋଟିଏ ଶାଖା ହିନ୍ଦୁକୁଶ ପାରି ହୋଇ ଇରାନ୍ ଅଧିତ୍ୟକା ଅଧିକାର କଲେ । ପ୍ରାୟ ଖ୍ରୀ: ପୂ: ୧୫୦୦ ଓ ଖ୍ରୀ:ପୂ: ୧୦୦୦ ମଧ୍ୟରେ ଆର୍ଯ୍ୟମାନେ ଭଲଗାପର

ଦକ୍ଷିଣାଞ୍ଚଳ ଅଧିକାର କରି ଗ୍ରୀକ୍ ଏବଂ ରୋମାନ ନାମରେ ଅଭିହିତ ହେଲେ ।

ଭାରତୀୟ ଆର୍ଯ୍ୟଜାତିର ପୃଥିବୀକୁ ବଶିଷ୍ଟ ଦାନ ହେଉଛି— ବେଦ ଉପନିଷଦ ଧର୍ମରେ ପୂର୍ବ ଯୁଗରୁ ଗଢ଼ିଆସିଥିବା ସ୍ୱୟଂ-ଶାସିତ ଗ୍ରାମରାଜ୍ୟର ଭିତ୍ତି ନିଷ୍ପତ୍ତି ଭାବରେ ରଖାଯାଇଛି । ଏହି ସ୍ୱାବଲମ୍ବୀ ଗ୍ରାମରାଜ୍ୟଗୁଡ଼ିକ ଉପରେ ଯେତେବେଳେ କିଛି ବାଧାବିଘ୍ନ ଆସୁଛି, ଏହି ବେଦ-ଉପନିଷଦରୁ ପ୍ରେରଣା ଲଭ କରି ପ୍ରଥମ ଶ୍ରେଣୀର ସର୍ବତ୍ୟାଗୀ ଜ୍ଞାନୀଲୋକେ (ଯେଉଁମାନଙ୍କର ନିରବଚ୍ଛିନ୍ନ ବିଦ୍ୟମାନତା ଭାରତରେ ଯୁଗ ଯୁଗ ଧରି ରହିଆସିଛି) ଦ୍ୱିତୀୟ ଶ୍ରେଣୀର ଜ୍ଞାନୀ ଶାସକଙ୍କୁ ନିଜର ସାଧନା ଓ ତପସ୍ୟା ବଳରେ ଗଢ଼ି ନେଇ ସେହିମାନଙ୍କ ସାହାଯ୍ୟରେ ଗ୍ରାମ୍ୟ ସମାଜ ଉପରେ କୁପ୍ରଭାବ ପକାଉଥିବା ବାଧାବିଘ୍ନରୂପୀ ଧର୍ମଗ୍ଲାନି ଓ ସଂକଟର ବିନାଶ ଘଟାନ୍ତି । ଉପନିଷଦର ଆବିଷ୍କୃତ ଏକ ଅଦ୍ୱିତୀୟ ସତ୍ୟର ନାନା ଦିଗରୁ ବିଚାର ଏପରି ଅକାଟ୍ୟ ହୃଦୟଗ୍ରାହି ହୋଇପାରିଛି ଯେ ଆଜି ପର୍ଯ୍ୟନ୍ତ କୌଣସି ମହାତ୍ମା ମହାପୁରୁଷ ଏହାଛଡ଼ା ବା ଉପନିଷଦକୁ ବିରୋଧ କରି ଅନ୍ୟ କିଛି ପ୍ରଚାର କରିନାହିଁ । ଯେକୌଣସି ଧର୍ମଗ୍ରନ୍ଥ, ଯଥା ପବିତ୍ର କୋରାନ ବା ବାଇବେଲକୁ ଉଦାର ନିରପେକ୍ଷ ଭାବରେ ଅଧ୍ୟୟନ କରି ବେଦାନ୍ତ ଉପନିଷଦକୁ ଅଧ୍ୟୟନ କର । ଦେଖିବ ଏବଂ ଉପଲବ୍ଧି କରିବ ଯେ, ବାଇବେଲ କୋରାନରେ ସତ୍ୟରୂପୀ ଭଗବାନଙ୍କ ବିଷୟରେ ଯାହା କୁହାଯାଇଛି, ସେସବୁ ଏବଂ ଅଧିକା କଥା ଉପନିଷଦରେ ମିଳିବ । ରାମାୟଣ, ମହାଭାରତ ମହାକାବ୍ୟ ଦ୍ୱୟ ଉପନିଷଦର ଏକ ଏକ ରୂପକ ଚିତ୍ର ଛଡ଼ା ଆଉ କିଛି ନୁହେଁ । ଉପନିଷଦକୁ ବିଶ୍ୱବିଜ୍ଞାନ କହିଲେ, ରାମାୟଣ ମହାଭାରତ ଦୁଇଟିକୁ ମୁଁ ଦୁଇଟି ବିରାଟ ପ୍ରୟୋଗଶାଳା ହିଁ କହିବ । ଉପନିଷଦର ବିଜ୍ଞାନ

ଆତ୍ମଜ୍ଞାନ ସମ୍ପର୍କରେ ବ୍ୟକ୍ତିଗତ ଜୀବନକୁ ନେଇ ପରୀକ୍ଷଣରେ ସଫଳ ପ୍ରୟୋଗ କରାଯାଇଛି ଏବଂ ସାମାଜିକ ଓ ବ୍ୟକ୍ତିଗତ ଉଭୟ ପ୍ରକାର ଜୀବନବିଜ୍ଞାନକୁ ମହାଭାରତର ବିରାଟ ଲବୋରେଟୋରୀରେ ପ୍ରୟୋଗ କରାଯାଇଛି ।

ପାଶ୍ଚାତ୍ୟରେ ବର୍ତ୍ତମାନ ଯୁଗ ଉପନିଷଦର ଆତ୍ମଜ୍ଞାନ, ବିଜ୍ଞାନ, ଅର୍ଥାତ୍ ବିଦ୍ୟା ଓ ଅବିଦ୍ୟା ଉଭୟର ଚର୍ଚ୍ଚା ଛାଡ଼ି କେବଳ ମାତ୍ର ଏକପାଖିଆ ଭାବରେ ବିଜ୍ଞାନର ଚର୍ଚ୍ଚା ଓ ଅଭୂତପୂର୍ବ ଉନ୍ନତି ଘଟାଇଲେ ବି ନାନା ଜଟିଳ ସମସ୍ୟାରେ ଛନ୍ଦହୋଇ ପଡ଼ୁଛି । ଫଳରେ ବିନୋବାଜୀଙ୍କ ଭାଷାରେ ଉପନିଷଦର ଋଷିଙ୍କ ସତର୍କବାଣୀକି ଶ୍ରଦ୍ଧା କରି ଯଦି ବିଦ୍ୟା ଅବିଦ୍ୟା, ଆତ୍ମଜ୍ଞାନ ଓ ବିଜ୍ଞାନ ଉଭୟକୁ ସମାନ ଆଦର କରିନେଯାଏ, ତେବେ ଜଗତ୍ ଧ୍ୱଂସ ଆଡ଼କୁ ମୁହାଁଇବ । ବିଦ୍ୟା ତତ୍ତ୍ୱତଃ ଆତ୍ମଜ୍ଞାନକୁ ବୁଝାଉଛି, ଏବଂ ଅବିଦ୍ୟା ବିଜ୍ଞାନକୁ ବୁଝାଉଛି ।

"ଜ୍ଞାନବିଜ୍ଞାନତୃପ୍ତାତ୍ମା କୂଟସ୍ଥୋ ବିଜିତେନ୍ଦ୍ରିୟଃ,
ଯୁକ୍ତ ଇତ୍ୟୁଚ୍ୟତେ ଯୋଗୀ ସମଲୋଷ୍ଟ୍ରାଶ୍ମକାଞ୍ଚନଃ ।" (ଗୀତା)

ଅର୍ଥାତ୍ ବାହାର ଜଗତ ବିଷୟରେ ଜ୍ଞାନକୁ ବିଜ୍ଞାନ କୁହାଯାଏ । ଅନ୍ତର୍ଜଗତ୍ ସମ୍ବନ୍ଧରେ ପ୍ରୟୋଗସିଦ୍ଧ ଅନୁଭୂତ ଉପଲବ୍ଧିକ ଆତ୍ମଜ୍ଞାନ ବା କେବଳ ମାତ୍ର ଜ୍ଞାନ ବୋଲି କୁହାଯାଏ । ଆତ୍ମଜ୍ଞାନ ଓ ବିଜ୍ଞାନ ଉଭୟରେ ବୈଜ୍ଞାନିକ ଆସକ୍ତିଶୂନ୍ୟ ଚର୍ଚ୍ଚା ଓ ସଫଳ ପ୍ରୟୋଗ ଦ୍ୱାରା ହିଁ "ମୋର ଦେହ ମନ ଇନ୍ଦ୍ରିୟାଦିଙ୍କଠାରୁ ମୁଁ ଯେ ଏକ ସ୍ୱତନ୍ତ୍ର ବସ୍ତୁ" ଏହି ସତ୍ୟର ଆବିଷ୍କାର ବ୍ୟକ୍ତିକ ନିଜର ସାଧନା ଓ ପ୍ରୟୋଗ ଦ୍ୱାରା ଗୁରୁ ବା ଆଚାର୍ଯ୍ୟଙ୍କ ନିର୍ଦ୍ଦେଶମତେ କରିବାକୁ ପଡ଼େ; ଦେହ ମନ ଇନ୍ଦ୍ରିୟ ଏବଂ ପ୍ରାଣର ପରସ୍ପର-

ବରେଧୀ ତୃଷ୍ଣା ବା ପ୍ରବୃତ୍ତି ଉପରେ ବିଜୟ ହାସଲ କରାଯାଏ । ସେତିକବେଳେ ଯାଇ କେହି ଜ୍ଞାନୀ ବା ଯୋଗୀ ବୋଲାଏ, ଯେତିକବେଳେ ଯାଇ ସେ ସତ୍ୟର ସାକ୍ଷାତ୍ ପାଏ; ଯେତିକବେଳେ ସେ ଜାଣିପାରେ ଯେ ବାହାରକୁ ଅଲଗା ଅଲଗା ଦେଖାଯାଉଥିବା ଚୁଡ଼ା, ମୁଢ଼ି , ଭାତ ଓ ଖଇ ତତ୍ତ୍ୱତଃ ଏକ ବସ୍ତୁର ବିଭିନ୍ନ ବିକାର ମାତ୍ର; ଠିକ ସେହିପରି ଢେଙ୍କା, ପଥର ଓ ସୁବର୍ଣ୍ଣ ତତ୍ତ୍ୱତଃ ଏକ ବସ୍ତୁ ଅଟନ୍ତି ।

ମାତ୍ର ଜ୍ଞାନ ଓ ବିଜ୍ଞାନ ଉଭୟ ପ୍ରୟୋଗରେ ସିଦ୍ଧ ନ ହେଲେ ଅନ୍ଧାରରେ ଦଉଡ଼ି ବା ହିଁ ସାର ହେବ । ଢେଙ୍କା ପଥର ଓ ସୁନା ତତ୍ତ୍ୱତଃ ଏକ ବସ୍ତୁ ବୋଲି ବିଜ୍ଞାନ ସାହାଯ୍ୟରେ ମୁଁ ଜାଣିଗଲେ ବି ଆତ୍ମଜ୍ଞାନର ବିନା ଉପଲବ୍ଧି ଓ ବିନା ପ୍ରୟୋଗରେ ମୁଁ ସୁବର୍ଣ୍ଣ ପ୍ରତି ଆସକ୍ତିରୁ ମୁକ୍ତ ହୋଇପାରିବି ନାହିଁ। ପକ୍ଷାନ୍ତରେ ଗୁରୁ ସହାୟତାରେ ମୁଁ ଆତ୍ମଜ୍ଞାନ ବଳରେ ଇନ୍ଦ୍ରିୟବିଜୟୀ ହେଲେ ବି ବୈଜ୍ଞାନିକ ଧାରଣା ଓ ବୈଜ୍ଞାନିକ ପ୍ରୟୋଗ ବିନା ମୁଁ ପ୍ରତି ମୁହୂର୍ତ୍ତରେ ବଦଳିଯାଉଥିବା ସଂସାର ଓ ସମାଜ ସହିତ ତାଳ ରଖି ଚାଲି ନ ପାରି ସଂସାର ଓ ସମାଜଠୁଁ ଦୂରେଇଯାଇ ଗୁମ୍ଫା ବା ମଠ ଭିତରେ ଆଶ୍ରୟ ନେବି ।

—*—

# ଅଷ୍ଟମ ଅଧ୍ୟାୟ

## ଆତ୍ମଜ୍ଞାନର ଯୁଗ:—

ଖ୍ରୀଷ୍ଟପୂର୍ବ ୬୦୦ରୁ ଖ୍ରୀଷ୍ଟାବ୍ଦ ୬୦୦ ପର୍ଯ୍ୟନ୍ତ ଯୁଗଟିକୁ ଆତ୍ମଜ୍ଞାନ ଚର୍ଚ୍ଚାର ଯୁଗ ବୋଲି କୁହାଯାଇପାରେ । ପଣ୍ଡିତ ନେହେରୁଙ୍କ ଭାଷାରେ ଏହି ଯୁଗ ମନୁଷ୍ୟ ସମାଜର ଅନୁସନ୍ଧିତ୍ସା ଯୁଗ । ଏଣୁ ଏହି ଅନୁସନ୍ଧିତ୍ସା ଯୁଗକୁ ବ୍ରାହ୍ମଣ୍ୟଯୁଗ ବି କୁହାଯାଇପାରେ । ପଞ୍ଚଦଶ ଶତାବ୍ଦୀରୁ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ଅନୁସନ୍ଧାନର ପୁନରାବୃତ୍ତି ଘଟିଥିଲା । ପ୍ରଭେଦ ଏତିକି ଯେ ଖ୍ରୀ: ପୂ: ୬୦୦ରୁ ଖ୍ରୀଷ୍ଟାବ୍ଦ ୬୦୦ ପର୍ଯ୍ୟନ୍ତ ଏକପାଖିଆ ଆତ୍ମଜ୍ଞାନ ଚର୍ଚ୍ଚାର ଚରମ ବିକାଶ ଘଟିଥିଲା । ମାତ୍ର ୧୫୦୦ରୁ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହି ୪୦୦ ବର୍ଷ ମଧ୍ୟରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଉନ୍ନତତମ ପରିପ୍ରକାଶ ଘଟିଛି ।

ବ୍ୟକ୍ତିର ବିଭିନ୍ନ ତୃଷ୍ଣା ବା ପ୍ରବୃତ୍ତି ମୂଳରେ ତାର ଯେଉଁ ସହଜାତ ସ୍ୱଭାବ ରହିଛି, ସେହି ଅମାର୍ଜିତ ସ୍ୱଭାବକୁ ମାର୍ଜିତ ଓ ଶୋଧିତ କରି କିପରି ସମାଜର କଲ୍ୟାଣକାରୀ ଆଚରଣରେ ରୂପାନ୍ତରିତ କରାଯିବ ତାର ଏକ ଧାରାବାହିକ ବିଧିବଦ୍ଧ ଅନୁସନ୍ଧାନ ଓ ସଫଳ ପ୍ରୟୋଗ ଏହି ଯୁଗର ଋଷିମାନେ କରିଥିଲେ । ମାତ୍ର ବିଜ୍ଞାନ ଓ ଆତ୍ମଜ୍ଞାନ ଉଭୟର ସମକାଳୀନ ସଫଳ ପ୍ରୟୋଗ ନ କଲେ ବ୍ୟଷ୍ଟି ଓ ସମଷ୍ଟି ଉଭୟର କଲ୍ୟାଣ ବ୍ୟାହତ ହୁଏ । ଉପନିଷଦର ଏହି

ସତ୍ୟକୁ ଖ୍ରୀ: ପୂ: ୬୦୦ରୁ ୭୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ କିମ୍ବା ୧୫୦୦ରୁ ୧୯୦୦ ପର୍ଯ୍ୟନ୍ତ ବୁଦ୍ଧ ଯିଶୁଙ୍କ ପରି ଆତ୍ମଜ୍ଞାନୀ ସାଧକ ସ୍ୱୀକାର କରିନାହାନ୍ତି; କିମ୍ବା ନିଉଟନ, ଡାରଉ୍ଇନ, ଆଇନଷ୍ଟାଇନ, ଫ୍ରଏଡ୍ ବା ମାର୍କ୍ସଙ୍କ ପରି ବୈଜ୍ଞାନିକମାନେ ସ୍ୱୀକାର କରିନାହାନ୍ତି । ସତ୍ୟର ଏହି ଯୋଦ୍ଧାଙ୍କ ପାଖକୁ ଧରିବାକୁ ଡାକରା ଦେଇଛନ୍ତି ମହାତ୍ମାଗାନ୍ଧି, ଆଚାର୍ଯ୍ୟ ବିନୋବା ଏବଂ ଶ୍ରୀମା, ଶ୍ରୀ ଅରବିନ୍ଦ । ଜଗତ୍ ଏମାନଙ୍କ ଡାକରାକୁ ନ ଶୁଣିବାଯାଏଁ ଅନ୍ୟ ପନ୍ଥା ନାହିଁ । "ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ ।" ପୁଣି "ଏକଂ ସତ୍ ବିପ୍ରା ବହୁଧା ବଦନ୍ତି ।" (ଉପନିଷଦ) । ସତ୍ୟ ଏକ ଏବଂ ଅଦ୍ୱିତୀୟ ହେଲେ ବି ପ୍ରତ୍ୟକ୍ଷଦ୍ରଷ୍ଟା ଜ୍ଞାନୀମାନେ ତାହାକୁ ନାନାପ୍ରକାରରେ ପ୍ରକାଶ କରନ୍ତି । ଗୌତମ ବୁଦ୍ଧ ଓ ଯିଶୁଙ୍କଠାରୁ ଆରମ୍ଭ କରି ମହମ୍ମଦ ଓ ଆଚାର୍ଯ୍ୟ ଶଙ୍କର ପ୍ରଭୃତି ପ୍ରତ୍ୟକ୍ଷଦ୍ରଷ୍ଟା ଜ୍ଞାନୀମାନେ ଏହି ପୂର୍ବ ଆବିଷ୍କୃତ ମାତ୍ର ବିସ୍ମୃତ ସତ୍ୟକୁ ପୁନରାବିଷ୍କାର କରିଗଲେ । ସେମାନେ ଦେଶକାଳପାତ୍ରକୁ ଚାହିଁ ଏହି ଏକ ଅଦ୍ୱିତୀୟ ସତ୍ୟକୁ ନାନାଭାବରେ ଓ ନାନାରୂପରେ ପ୍ରକାଶ କରିଗଲେ । ଅଥଚ ବିଜ୍ଞାନର ଧାରାବାହିକ ଚର୍ଚ୍ଚା ଓ ପ୍ରୟୋଗ ଅଭାବରୁ ଏହି ଜ୍ଞାନୀମାନଙ୍କ ବିଭିନ୍ନ ମତ ନେଇ ୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସାରା ପୃଥିବୀରେ ଧର୍ମ ନାମରେ ନାନା ସଂଘର୍ଷ ଓ ରକ୍ତପାତ କରାଗଲା, ଯାହାର ଫଳରେ କି ଧର୍ମଟା ଉପରେ ଚୋଟ ଲାଗିଲା ହେଲା । ୧୫୦୦ ଖ୍ରୀଷ୍ଟାବ୍ଦରୁ ଧର୍ମ ଓ ଭଗବାନଙ୍କୁ ବାଦ୍ ଦେଇ ଅନ୍ୟ ପନ୍ଥାରେ ସମସ୍ୟା ସମାଧାନ କରିବାକୁ ଏକ ଆନ୍ଦୋଳନର ତରଙ୍ଗ ସୃଷ୍ଟି ହେଲା । ବିଜ୍ଞାନର ଅଭ୍ୟୁଦୟ ଓ ବିକାଶ ଘଟିଲା ।

ସତ୍ୟ ହିଁ ଆତ୍ମା, ବ୍ରହ୍ମ, ସଚ୍ଚିଦାନନ୍ଦ ବା ଈଶ୍ୱର ବୋଲି ଉପନିଷଦର ଋଷିମାନେ କହିଗଲେ; ଏହାଙ୍କୁ ଜାଣିବାକୁ ବା ଉପଲବ୍ଧି କରିବାକୁ ଉଭୟ ଆତ୍ମଜ୍ଞାନ ଓ ବିଜ୍ଞାନର ଆଶ୍ରା ନେବାକୁ ପଡ଼ିବ ।

ଏଣି ସତ୍ୟ ଜାଣିବାକୁ ପ୍ରବଳ ଆଗ୍ରହ, ବ୍ୟାକୁଳତା ଓ ଆଗ୍ରହ ବା ଗୁରୁଙ୍କ ପ୍ରତି ଅବ୍ୟଭିଚାରିଣୀ ଭକ୍ତି ନ ଥିଲେ ବି ଏହି ସତ୍ୟକୁ ଉପଲବ୍ଧି କରିହେବନାହିଁ, ଏହା ମଧ୍ୟ ବେଦାନ୍ତ ଉପନିଷଦର ଋଷିମାନେ କହିଗଲେ । ସର୍ବଶେଷରେ ସତ୍ୟରୂପୀ ଭଗବାନଙ୍କ କୃପା ନ ହେଲେ ତାଙ୍କୁ କେହି ଉପଲବ୍ଧି କରିପାରିବ ନାହିଁ । ସତ୍ୟ-ସ୍ୱରୂପୀ ଆତ୍ମାର ଅଦ୍‌ଭୁତ ଏକତ୍ୱ ଏବଂ ଅନନ୍ତ ବୈଚିତ୍ର୍ୟକୁ ଉପନିଷଦର ଋଷିମାନେ ଆବିଷ୍କାର କରିଯାଇ ସାବ୍ୟସ୍ତ କରିଗଲେ ଯେ ଆତ୍ମାର ଅଦ୍‌ଭୁତ ଐକ୍ୟକୁ ଆତ୍ମଜ୍ଞାନଦ୍ୱାରା, ତାଙ୍କର ଅନନ୍ତ ବୈଚିତ୍ର୍ୟକୁ ବିଜ୍ଞାନଦ୍ୱାରା ଏବଂ ଆତ୍ମାର ଏହି ପରସ୍ପରବିରୋଧୀ ତତ୍ତ୍ୱ ଦୁଇଟିକୁ ପ୍ରଜ୍ଞାଦ୍ୱାରା ଧାରଣା କରାଯାଇପାରେ । ଆତ୍ମାକୁ ସୀମିତ ମନଦ୍ୱାରା ବା ବୁଦ୍ଧିହେବନାହିଁ କି ସୀମିତ ବାଣୀଦ୍ୱାରା ବା ପୂର୍ଣ୍ଣଭାବରେ କାହାରିକୁ ବୁଝାଇ ହେବନାହିଁ । ଏହି କାରଣରୁ ବୁଦ୍ଧ, ଯିଶୁ, ମହମ୍ମଦ, ଶଙ୍କର ଏହି ଆତ୍ମତତ୍ତ୍ୱକୁ ବୁଝାଇବାକୁ ଯାଇ ଯେଉଁ ବାଣୀ ରଖିଗଲେ, ସେହି ବାଣୀର ତତ୍ତ୍ୱାର୍ଥ ଲୋକେ ସୀମିତ ମନଦ୍ୱାରା ଧାରଣା କରିପାରିଲେନାହିଁ । ସୀମିତ ମନଦ୍ୱାରା ବୁଝିବାକୁ ଚେଷ୍ଟା କଲେ ରାମ ରହିମ, ଈଶ୍ୱର ଆଲ୍ଲା, ବା ଶ୍ୟାମ ଶ୍ୟାମା ସର୍ବଦା ଅଲଗା ଅଲଗା ବୋଲି ଜଣାଯିବେ ଏବଂ ବିବାଦର ସୃଷ୍ଟି କରିବେ । ୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବୁଦ୍ଧ, ଯିଶୁ, ମହମ୍ମଦ, ଶଙ୍କର ପ୍ରଭୃତି ଅତିମାନବଙ୍କଦ୍ୱାରା ଆତ୍ମଜ୍ଞାନର ଯେଉଁ ଚରମ ବିକାଶ ହେଲା, ସେହି ଅନୁପାତରେ ବିଜ୍ଞାନର ବିକାଶରେ କିଛି ଅଗ୍ରଗତି ହେଲନାହିଁ । ଏହାର ପ୍ରତିକ୍ରିୟା ହେଲା, ୬୦୦ରୁ ୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଧର୍ମମତ ନେଇ ବାଦ୍‌ଆବାଦ୍ ଓ ରକ୍ତପାତ । ଧର୍ମାନ୍ଧତା ହିଁ ୬୦୦ରୁ ୧୫୦୦ ଖ୍ରୀଷ୍ଟାବ୍ଦ ଏହି ୯୦୦ ବର୍ଷର ବିଶେଷତ୍ୱ । ଧର୍ମାନ୍ଧତା ହିଁ ଶୂଦ୍ରତ୍ୱର ଏକ ବିଶିଷ୍ଟ ଲକ୍ଷଣ । ହେତୁଶୂନ୍ୟ କ୍ରୋଧ ଓ ଜିଦ୍ ହିଁ ଶୈଶବର ଏକ ମୂଳଲକ୍ଷଣ । ଏଣୁ ୬୦୦ ଖ୍ରୀ. ଅ. ରୁ

୧୫୦୦ ଖ୍ରୀ: ଅ: ପର୍ଯ୍ୟନ୍ତ ଯୁଗକୁ ସମାଜର ଶୈଶବାବସ୍ଥାର ବା ସ୍ୱାତନ୍ତ୍ରର ପୁନରାବୃତ୍ତିର ଯୁଗ ବୋଲି ମୁଁ କହିବ, ଯେଉଁ ଶୁଦ୍ଧତା ବା ଶୈଶବ ପ୍ରବଚନ ସ୍ତରଯୁଗର ସମାଜରେ ଜନ୍ମ ନେଇଥିଲା ।

ଭାରତ ଓ ଚୀନ ସମାଜର ଅନୁଧ୍ୟାନରେ ସ୍ୱାବଲମ୍ବୀ ସ୍ୱୟଂଶାସିତ ଗ୍ରାମରାଜ୍ୟଗୁଡ଼ିକ ଏହି ଦୁଇ ସମାଜର ସ୍ୱାର୍ଥ ଓ ରକ୍ଷାରେ, ତାର ପୁରାତନର ସଂସ୍କୃତି ଓ ସଭ୍ୟତାକୁ ବଞ୍ଚାଇ ରଖିବାରେ ଦୁର୍ଭେଦ୍ୟ ଦୁର୍ଗ ସ୍ୱରୂପ ରହିଥିଲା । ଗ୍ରାମରାଜ୍ୟଗୁଡ଼ିକର ସ୍ୱୟଂଶାସନ ଶକ୍ତି ଓ ସ୍ୱାବଲମ୍ବନଶୀଳତାକୁ ବ୍ରିଟିଶ ଶାସନ ଧ୍ୱଂସ କରିଛି । ମାତ୍ର ଗ୍ରାମ୍ୟ ସମାଜର ଆଧ୍ୟାତ୍ମିକ ଭିତ୍ତି ଅଦ୍ୟାପି ଦୃଢ଼ ରହିଥିବାରୁ ଅଳ୍ପ କାଳ ମଧ୍ୟରେ ସେହି ଶକ୍ତି ଓ ସ୍ୱାବଲମ୍ବନଶୀଳତାକୁ ଏ ସମାଜ ପୁଣି ଲାଭ କରିବ, ଏଥିରେ ତିଳେମାତ୍ର ସଂଶୟ ନାହିଁ । ସକଳ ବୈଚିତ୍ର୍ୟ ଓ ବିଭିନ୍ନତା ମଧ୍ୟରେ ଏକତାକୁ ଚିହ୍ନି ସବୁ ଦେଶକୁ ନିଜର ବିଶାଳ ଗର୍ଭରେ ମିଶାଇବାର ଶକ୍ତି ହିଁ ଭାରତୀୟ ଗ୍ରାମ୍ୟ ସମାଜର ଆଧ୍ୟାତ୍ମିକ ଭିତ୍ତିଭୂମି, ଯାହାକୁ ଭାରତ ଉପନିଷଦ ଯୁଗରୁ ଗଢ଼ି ନେଇଛି, ଯେଉଁ ଭିତ୍ତିଭୂମି ସମାଜର ଖୁବ୍ ଗଭୀରତା ମଧ୍ୟକୁ ଯାଇଛି । ଭାରତର ହସ୍ତିନାପୁର ବା ଦିଲ୍ଲୀ ସହର ବାରମ୍ବାର ହସ୍ତାନ୍ତର ହୋଇଛି । ମାତ୍ର ବେଦ ଉପନିଷଦ, ସିଦ୍ଧାର୍ଥ ଓ ଅଶୋକଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ଭାରତର ପାଟଳିସ ଅଯୋଧ୍ୟା, କାଶୀ, ବୃନ୍ଦାବନ, ମଥୁରା, ରାମେଶ୍ୱର, କାଞ୍ଚି, କାଉଁରୀ କାମାକ୍ଷା ଓ ଦ୍ୱାରକା ବେଦ ଉପନିଷଦର ସେହି ଧ୍ରୁବ ସତ୍ୟଟିକୁ ଧରି ରଖିଥିବାରୁ ଦିଲ୍ଲୀ ବାରମ୍ବାର ତାର ହାତରୁ ଖସିଗଲେ ବି ବିଜେତାମାନେ ଏହି ସତ୍ୟ ପାଖରେ ଶେଷରେ ହାର ମାନି ଦିଲ୍ଲୀକୁ ଫେରାଇଦେଇଛନ୍ତି । ବଳୀ ସବୁଯୁଗରେ ବାମନଙ୍କ ପାଦରେ ଅବନତ ହୋଇଛି ।

ଚୀନର ଗ୍ରାମ୍ୟ ସମାଜ ବା ଲଓସି ଓ କନ୍‌ଫୁସିୟସଙ୍କ ଧର୍ମରୁ ଆଜି ପର୍ଯ୍ୟନ୍ତ ତାର ସ୍ୱ-ଧର୍ମକୁ ବଜାୟ ରଖିଛି । ପ୍ରବଳ ବାଧା ବିପତ୍ତିରେ ଭାଙ୍ଗି ନ ପଡ଼ି ଧୈର୍ଯ୍ୟ ଶାନ୍ତି ରଖିବାର ଶକ୍ତି ହିଁ ଚୀନା ଓ ଭାରତୀୟ କୃଷକର ଏକ ପରମ୍ପରାଗତ ବିଶିଷ୍ଟ ସ୍ୱଭାବରେ ପରିଣତି ଲାଭ କରିଛି ।

ବ୍ୟକ୍ତିଗତ ତଥା ସାମାଜିକ ଜୀବନରେ ବାରମ୍ବାର ଅବଶ୍ୟମ୍ଭାବୀ ଭାବରେ ଯେଉଁ ସମସ୍ୟାସବୁ ଦେଖା ଦିଏ ସେହି ସମସ୍ୟାସବୁର ଶାନ୍ତିମୟ ସମାଧାନ କରିପାରିବା ହିଁ ଚରମ ବିଚକ୍ଷଣତା ଓ ଜୀବନର ସର୍ବୋତ୍କୃଷ୍ଟ ଆର୍ଟ ଯାହାକି କେବଳ ଶ୍ରୀରାମ, ଶ୍ରୀକୃଷ୍ଣ, ଗୌତମ, ଅଶୋକ, ଗାନ୍ଧି, ପ୍ରଭୃତିଙ୍କ ପଦାଙ୍କପୂତ ଭାରତର ନିଜସ୍ୱ ଅଟେ । ଆମେରିକା, ଇଂଲଣ୍ଡ, ରୁଷ, ଫ୍ରାନ୍ସ, ଇଟାଲି, ଆରବ, ଇସ୍ରାଏଲ, ଚୀନ, ଜାପାନ ପ୍ରଭୃତି ସମ୍ଭବତଃ ପୃଥିବୀର ପ୍ରତ୍ୟେକ ଦେଶର କିଛି ନା କିଛି ବୈଶିଷ୍ଟ୍ୟ ଅବଦାନ ଜଗତକୁ ଦେବାର ଅଛି । ଦୃଷ୍ଟାନ୍ତସ୍ୱରୂପ, ଇଂରେଜ ଜାତିର ଦେଶପ୍ରେମ, ଶୃଙ୍ଖଳା ପ୍ରୀତି, ବ୍ୟକ୍ତି ସ୍ୱାଧୀନତା ଓ ପ୍ରୟୋଜନୀୟତା ଏହି ସବୁ ଗୁଣର ଏକତ୍ର ସମାବେଶ ଅନନ୍ୟ-ସାଧାରଣ, ଯେଉଁ ଗୁଣରାଜି ଏକତ୍ର ସମାବେଶ ଅନ୍ୟ ଜାତିର ନାହିଁ । ଚୀନାର ଶ୍ରମ [illegible], ସବୁ ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇନେବାର ଶକ୍ତି, ପିତୃମାତୃ ଭକ୍ତି, ପ୍ରତିବେଶୀ ସୌହାର୍ଦ୍ଦ୍ୟ ଏହି କେତୋଟିର ଏକତ୍ର ସମାବେଶ ଅନ୍ୟ ଜାତିର ନାହିଁ । ଭାରତର ତେବେ କି ବୈଶିଷ୍ଟ୍ୟ ରହିଛି, ତାର କି ଅବଦାନ ଜଗତକୁ ଦେବାର ଅଛି ?

ନିମ୍ନୋକ୍ତ ଅବଦାନଟି ଭାରତର ଯାହା ଜଗତକୁ ଦେବାର ଅଛି । ରୁଷିଆ ଆଜି ଚୀନରେ ଶୋଷଣ ମୁକ୍ତ ସମାଜ ପ୍ରତିଷ୍ଠା

କରିବାକୁ ଉକ୍ତନୀତି ବନ୍ଧିଗଲା । ପ୍ରତି ଗ୍ରାମରେ ସୋଭିଏତ୍, କମ୍ୟୁନ୍ ବା ଗ୍ରାମସଭା ପ୍ରତିଷ୍ଠା କରି ଏ ସବୁକୁ ମାଓ୍ୱମକଚି ନିୟନ୍ତ୍ରିତ କରି ରଖିବା ଦ୍ୱାରା ଅସାଧ ଓ ଜଟିଳ ସମସ୍ୟା ସୃଷ୍ଟି ମୂଳ ଛେଳୁଛି । ଲୋକଙ୍କର ଚାଲିଚଳନ, ଗତିବିଧି ଓ ଆଚରଣରେ କାଳେ କେତେବେଳେ ସମ୍ବରର ନିରାପତ୍ତା ନଷ୍ଟ ହୋଇପଡ଼ିବ, ଏହି ଆଶଙ୍କା ସର୍ବଦା ସେ ଦେଶର ଶାସକମାନଙ୍କୁ ଘାରୁଛି । ଗ୍ରାମର ଜମିଜମା ଉପରେ ଥିବା ବ୍ୟକ୍ତିଗତ ମାଲିକାନାକୁ ରଦ୍ଦ କରାଯାଇ ଏହି ମାଲିକାନାକୁ ସୋଭିଏତ୍, କମ୍ୟୁନଙ୍କ ହାତରେ (ଗ୍ରାମସଭା ବା ପଞ୍ଚାୟତ ) ସମର୍ପି ଦିଆଯାଇଛି ସ ; ମାତ୍ର ସୋଭିଏତ୍ ବା କମ୍ୟୁନ୍-ଗୁଡ଼ିକ କେନ୍ଦ୍ର ସରକାର ବା ପ୍ରାଦେଶିକ ସରକାରଙ୍କର ସମ୍ପୂର୍ଣ୍ଣ ଆୟତ୍ତ ଥିବାରୁ; କମ୍ୟୁନ ବା ସୋଭିଏତ୍‌ଗୁଡ଼ିକର ନିରାପତ୍ତା ରକ୍ଷା କରିବାକୁ ମିଲିଟାରି ଓ ହାତ ହତିଆର ସାହାଯ୍ୟ ନେବାକୁ ପଡ଼ୁଛି । ଏହି ପ୍ରସଙ୍ଗରେ ସନ୍ଥ ବିନୋବାଙ୍କ ‘ଜୟ ଜଗତ’ ଧ୍ୱନି ବିଷୟରେ ଟିକିଏ ବିଚାର କରାଯାଉ । ଏହି ମହତ୍ ବାଣୀର ଏହାହିଁ ତାତ୍ପର୍ଯ୍ୟ ଯେ, ଦିନ ଆସୁଛି, ଯେତେବେଳେ କି ସାରା ବସୁଧା ଗୋଟିଏ କୁଟୁମ୍ବ ପରି ଚଳି ନ ଶିଖିଲେ, ପୃଥିବୀର ଧ୍ୱଂସ ଘଟିବ । ରୁଷିଆ ଆଜି ଯେଉଁ କଥାଟିକୁ ବନ୍ଧୁକ ସାହାଯ୍ୟରେ କରିବାକୁ ଚେଷ୍ଟା କରୁଛନ୍ତି, ସେହି କଥାଟିକୁ ଭାରତ ଶାନ୍ତିର ବାଟରେ କରି ଦେଖାଇ ଦେବ ତ, ଭାରତର ୫ ଲକ୍ଷ ଗାଆଁ ଗୋଟିଏ ପରିବାର ପରି ଚଳିପାରିବେ ତ, ତାହାହିଁ ଜଗତକୁ ଭାରତର ଶ୍ରେଷ୍ଠ ଅବଦାନ ହେବ । ଭାରତର ଗାଁଗୁଡ଼ିକ ହାତ ହତିଆର ବିନା ଗୋଟିଏ ପରିବାର ପରି ଚଳିବାର ଶକ୍ତିକି ଦେଖାଇ ପାରିଲେ ହିଁ ସାରା ଜଗତ ବି ଗୋଟିଏ ପରିବାର ପରି ଚଳିବାକୁ ପ୍ରସ୍ତୁତ ହୋଇଯିବ ।

"ଅନନ୍ତ ବୈଚିତ୍ର୍ୟ ଓ ବୈଷମ୍ୟ ଭିତରେ ହିଁ ଏକ ଅଦ୍ୱିତୀୟ ସତ୍ୟ ଶିବ ସୁନ୍ଦରଙ୍କର ନିତ୍ୟ ସତ୍ତା" ଏହାହିଁ ହେବ ଜଗତକୁ ଭାରତର ପରମ ଶିକ୍ଷା । ପ୍ରତ୍ୟେକ ବ୍ୟକ୍ତି ମଣିଷଟି ଭିତରେ ଏକ ଅବ୍ୟକ୍ତ ଚୈତନ୍ୟମୟ ପୁରୁଷଙ୍କୁ ଦେଖି ଦେଖାଇ ପାରିବାର ଶକ୍ତି ଅର୍ଜନ କରି ଶିଖିଛି ସାରା ପୃଥିବୀ ମଧ୍ୟରେ କେବଳ ଭାରତ । ଶ୍ରୀ ଅରବିନ୍ଦଙ୍କ ଭାଷାରେ ବିଶ୍ୱ ମାନବର ହୃଦୟପୃରେ ଏହି ଶକ୍ତିର ସଂଗ୍ରହ କରିବାକୁ ଭାରତ ହିଁ ଏକା ସମର୍ଥ ହୋଇପାରେ । ଆତ୍ମଜ୍ଞାନର ସୂକ୍ଷ୍ମଟିକୁ ଆୟତ୍ତ କରିଥିବା ଭାରତ ହିଁ ସାରା ଜଗତର ଆଧ୍ୟାତ୍ମିକ ଗୁରୁ ହୋଇପାରେ, ଠିକ୍ ଯେପରି ବିଜ୍ଞାନ ବିଷୟରେ ରୁଷ ଓ ଆମେରିକା ହିଁ ବର୍ତ୍ତମାନ ସାରା ଜଗତର ଗୁରୁ ହୋଇ ପାରିଛନ୍ତି ।

ଭାରତର ସାତଲକ୍ଷ ଗ୍ରାମ ଗୋଟିଏ ପରି ଚଳିପାରିବେ ତ, ରୁଷିଆ, ଆମେରିକା ମଧ୍ୟରେ ଶୀତଳ ଯୁଦ୍ଧର ଅବସାନ ହେବ । ଆଣବିକ ଆୟୁଧମାନଙ୍କୁ ସ୍ୱେଚ୍ଛାରେ ନଷ୍ଟ କରିଦିଆଯିବ । ପୃଥିବୀର ପ୍ରତି ଗ୍ରାମ ସ୍ୱାବଲମ୍ବୀ ଓ ସ୍ୱୟଂଶାସିତ ଗୋଟିଏ ଲେଖାଁ ରାଜ୍ୟ ହେବ ।



# ନବମ ଅଧ୍ୟାୟ

## ଧର୍ମାନ୍ଧତାର ଯୁଗ

( ଖ୍ରୀଷ୍ଟାବ୍ଦ ୬୦୦ ରୁ ୧୫୦୦ ଖ୍ରୀଷ୍ଟାବ୍ଦ )

ମୁଁ ପୂର୍ବରୁ ଉଲ୍ଲେଖ କରିଛି ଯେ ସମାଜର ଶୈଶବ, ଯୌବନ, ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ଏହି ଚାରୋଟି ଅବସ୍ଥାର ଚକ୍ରଗତ ପ୍ରଣାଳୀରେ ପୁନରାବୃତ୍ତି ଘଟେ । ଏବଂ ପ୍ରତି ପୁନରାବୃତ୍ତିରେ ପୂର୍ବର ଉତ୍କୃଷ୍ଟ ଅବସ୍ଥା ଥିଲେ ବି ତାହା ଅଧିକତର ପରିମାର୍ଜିତ ଅବସ୍ଥାରେ ପୁନଃପ୍ରକାଶ ହୁଏ ।

ଶିଶୁଠାରେ ନିମ୍ନଲିଖିତ ସଦ୍‌ଗୁଣ, ଦୁର୍ଗୁଣମାନ ଦେଖାଯିବା ପରି ସମାଜର ଶୈଶବାବସ୍ଥାରେ ଏହି ସବୁ ଗୁଣ ଦେଖାଯାଏ । ଯଥା :— ସରଳତା, ଟିକିଏ କଥାରେ ବିଶ୍ୱାସ କରିବା, କୌତୂହଳପ୍ରିୟତା, ଆହାର ନିଦ୍ରା-ବିହାର ପ୍ରତି ଆସକ୍ତି, ଚଞ୍ଚଳତା, ଅନ୍ୟମନସ୍କତା, ଅଜ୍ଞାନତା, କୌତୁକ, ଦ୍ୱନ୍ଦ୍ୱ, କ୍ରୋଧ, ଦୟାଳୁତା, ଜିଦିଖୋରି ପ୍ରଭୃତି ।

ପୁରାତନ ପ୍ରସ୍ତର ଯୁଗର ମଣିଷଙ୍କଠାରେ ଏହିସବୁ ସଦ୍‌ଗୁଣ ଦୁର୍ଗୁଣଗୁଡ଼ିକର ପରିପ୍ରକାଶ ଘଟିଥିଲା । ଏହି ଗୁଣଗୁଡ଼ିକର ପ୍ରଭାବ ପରବର୍ତ୍ତୀ ସମାଜରେ କମିଯାଇଥିଲା, ଠିକ୍ ଯେପରି ଶୈଶବର ଆଚରଣଗୁଡ଼ିକ ଚାଲିଯାଇ ଯୌବନରେ ଅନ୍ୟ ପ୍ରକାର ଆଚରଣମାନ

ପ୍ରକାଶ ପାଏ । ପୁରାତନ ପ୍ରସ୍ତର ଯୁଗର ସମାଜର ଶୈଶବସ୍ତ୍ରଭାବ ଗୁଣଗୁଡ଼ିକ ଅନ୍ୟ ଆକାରରେ ପୁନଃ ପ୍ରକାଶିତ ହେଲା । ମାନବ ସମାଜରେ ଖ୍ରୀଷ୍ଟାବ୍ଦ ୬୦୦ ରୁ ୧୫୦୦ ମଧ୍ୟରେ ଧର୍ମାନ୍ଧତା, ଧର୍ମ ପାଇଁ ଭଗବାନଙ୍କ ପାଇଁ ଲଢ଼ାଇ ବା ଜହାଦ୍‌ରେ ଜବରଦସ୍ତି ଭାବ ଏବଂ ଅନ୍ଧବିଶ୍ୱାସ ରହିଥିଲା, ଯେଉଁ ଲକ୍ଷଣ କି ଶୈଶବରେ ପ୍ରକାଶିତ । ଯୌବନକୁ ମୁଁ ବିବାହିତ ଜୀବନର ଆରମ୍ଭଠାରୁ ଧରିଥିବାରୁ କୌମାର ବା କୈଶୋରାବସ୍ଥାକୁ ଶୈଶବର ହିଁ ଅନ୍ତର୍ଗତ କରି ନେଇଛି । ଏଣୁ ବାଲ୍ୟ କୈଶୋର ଅବସ୍ଥାରେ ବ୍ୟକ୍ତିଠାରେ ଯେଉଁ ଗୁଣ ଓ ଆଚରଣ ଦେଖାଯାଏ, ସେହି ସେହି ଗୁଣ ଓ ଆଚରଣ ହିଁ ମନୁଷ୍ୟ ସମାଜର ଶୈଶବରେ ଦେଖାଦିଏ । ହେତୁହୀନ ନିର୍ଦ୍ଦୟତା ବାଳକର ଗୋଟିଏ ଆଚରଣ ହେବା ପରି ସମାଜର ଶୈଶବାବସ୍ଥାରେ ଏହି ଦୁର୍ଗୁଣଟି ଦେଖା ଦେଇଥିଲା । ରୋମ ସମ୍ରାଟ ନେରୋ, ଶ୍ରେଷ୍ଠ ତୈମୁରଙ୍କର ଏହି ହେତୁହୀନ ନିର୍ଦ୍ଦୟତା ଦେଖା ଦେଇଥିଲା । ମଙ୍ଗୋଲ ସମ୍ରାଟ ଚେଙ୍ଗିସ ଖାଁଙ୍କଠି ଏହି ହେତୁହୀନ ନିଷ୍ଠୁରତା ଦେଖାଦେଇଥିଲା । ଇଉରୋପରେ ଏହି ପୁନରାବୃତ୍ତ ସମାଜରେ ବହୁ ଧର୍ମାତ୍ମା ସାଧୁ ସନ୍ଥଙ୍କୁ ଜୀବନ୍ତ ଦଗ୍ଧ କରିବାରେ ଏହି ହେତୁହୀନ ନିର୍ଦ୍ଦୟତା ପ୍ରକାଶିତ ହୋଇଥିଲା । ବାଳକମାନଙ୍କର ପର ବାଡ଼ି ବଗିଚାରୁ ଫଳ ଚୋରି କରି ଖାଇବା ପରି ଏହି ଯୁଗରେ ଶକ, କୁଶାଣ, ହୁନ, ତାତାର, ଆରବ, ତୁର୍କ, ମଙ୍ଗୋଲ ପ୍ରଭୃତି ପଶୁପାଳକ, ଯାଯାବର ଜାତିମାନେ, ତଥା ଆଙ୍ଗ୍ଲୋସାକସନ, ଦିନାମାର ଜଳଦସ୍ୟୁ ଏବଂ ନର୍ମାନମାନେ ଇଉରୋପ, ତଥା ଏସିଆର ଭାରତ ଚୀନ ପ୍ରଭୃତି ଅଞ୍ଚଳରେ ଲୁଣ୍ଠନ, ଆକ୍ରମଣ କରି ରୋମ ସାମ୍ରାଜ୍ୟ, ଗୁପ୍ତ ସାମ୍ରାଜ୍ୟ ଆଦିର ପତନ ଘଟାଇଥିଲେ; ସାମାଜିକ ଜୀବନର ନିରାପତ୍ତା ଶିଥିଳ ହୋଇଗଲା ।

ମହାପୁରୁଷ ମହମ୍ମଦଙ୍କ ଦ୍ୱାରା ଇସ୍‌ଲାମ ଧର୍ମ ପ୍ରତିଷ୍ଠା ଫଳରେ ଆରବ, ତୁର୍କ, ତାତାର, ମଙ୍ଗୋଲ ପ୍ରଭୃତି ଯାଯାବର ଜାତିର ଅଭ୍ୟୁଦୟ ଏବଂ ନବ ଜାଗରଣ ଏହି ଯୁଗର ଏକ ବିଶିଷ୍ଟ ଘଟଣା । ଖ୍ରୀଷ୍ଟାବ୍ଦ ୭୦୦ରୁ ୧୫୦୦ ମଧ୍ୟରେ ଇସ୍‌ଲାମର ବାଣୀ ଏସିଆର ବହୁ ଅଞ୍ଚଳ, ଇଉରୋପର ସ୍ପେନ ପ୍ରଭୃତି ଅଞ୍ଚଳରେ, ଆଫ୍ରିକାର ଉତ୍ତରାଞ୍ଚଳରେ ପ୍ରସ୍ତୃତ ହୋଇଥିଲା । ସାରା ଇଉରୋପ ଯିଶୁଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇ ଖ୍ରୀଷ୍ଟିୟାନ ବୋଲାଇଲେ । ଖ୍ରୀଷ୍ଟିୟାନ ମୁସଲମାନଙ୍କ ମଧ୍ୟରେ ବହୁ ସଂଘର୍ଷ ଓ ରକ୍ତପାତ ହୋଇଥିଲା । ଭାରତରେ ସିନ୍ଧୁଦେଶକୁ ଆରବ ମୁସଲମାନମାନେ ୯୦୦ ଖ୍ରୀଷ୍ଟାବ୍ଦରୁ ଅଧିକାର କଲେ । ଏହା ପରେ ତୁର୍କ ଏବଂ ଆଫଗାନମାନେ ୧୨୦୦ରୁ ୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦିଲ୍ଲୀ ଅଧିକାର କରି ଉତ୍ତର ଭାରତ ଏବଂ ଦାକ୍ଷିଣାତ୍ୟର ବହୁ ଅଞ୍ଚଳକୁ ଶାସନ କଲେ । ଅତି ଅଳ୍ପକାଳ ମଧ୍ୟରେ ଇସ୍‌ଲାମର ଅଗ୍ରଗତିର ଅନେକ କାରଣ ମଧ୍ୟରୁ କେତେଗୁଡ଼ିଏ କାରଣ ହେଉଛି—ଇସ୍‌ଲାମ ଧର୍ମକୁ ଜବରଦସ୍ତି ଭୟ ଓ ପ୍ରଲୋଭନ ଦେଖାଇ ଲୋକଙ୍କ ଉପରେ ମୁସଲମାନ ଶାସକ ଓ ଧର୍ମପ୍ରଚାରକମାନେ ଚପାଇ-ଦେଲେ । ଇସ୍‌ଲାମର ସରଳ ତତ୍ତ୍ୱ ଓ ମୁସଲମାନମାନଙ୍କ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ଭ୍ରାତୃଭାବ ସମାଜର ବହୁ ଦଳିତ, ନିର୍ଯ୍ୟାତିତ ଦୁଃସ୍ଥ ଲୋକଙ୍କୁ ଏହି ଧର୍ମ ଗ୍ରହଣ କରିବାକୁ ଆକୃଷ୍ଟ କରିଥିଲା ।

୧୦୫୫ ଖ୍ରୀଷ୍ଟାବ୍ଦଟି ବିଶ୍ୱ ଇତିହାସରେ ତଥା ଏହି ଧର୍ମାନ୍ଧତାର ଯୁଗରେ ଏକ ବିଶିଷ୍ଟ ଘଟଣା, ଯାହାର ଫଳରେ କି ମାନବ ସମାଜର ପରବର୍ତ୍ତୀ ଯୁଗକୁ ପଦକ୍ଷେପ କରିବାର ବାଟ ଫିଟିଗଲା ।

୧୦୫୫ ରେ ଇସ୍‌ଲାମ ଧର୍ମରେ ନୂଆ ଦୀକ୍ଷିତ ହୋଇଥିବା ତୁର୍କମାନେ କନଷ୍ଟାଣ୍ଟିନୋପଲ ସହରକୁ ଅଧିକାର କଲେ ଏବଂ

ଖ୍ରୀଷ୍ଟିୟାନ ଇଉରୋପ ଏବଂ ଭାରତ ଓ ପୂର୍ବଭାରତୀୟ ଦ୍ୱୀପପୁଞ୍ଜର ବାଣିଜ୍ୟ ସମ୍ବନ୍ଧ ରଖିଥିବା ମୁସଲମାନ ଆରବ ବଣିକମାନଙ୍କର ପଥ-ରୋଧ କଲେ । ଏହି କନଷ୍ଟାଣ୍ଟିନୋପଲ ହିଁ ପୂର୍ବ ରୋମାନ ସାମ୍ରାଜ୍ୟର ରାଜଧାନୀ ଥିଲା । ପ୍ରଥମ ରୋମାନ ସାମ୍ରାଜ୍ୟର ରାଜଧାନୀ ଥିଲା ରୋମ । ଏହି ରୋମାନ ସାମ୍ରାଜ୍ୟ ଯିଶୁଙ୍କ ଆବିର୍ଭାବ ପୂର୍ବରୁ ସ୍ଥାପିତ ହୋଇ ୪୦୦ ଓ ୬୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ହୁଣ, ଭଣ୍ଡାଲ, ସାକ୍ସନ, ଫ୍ରାଙ୍କ ପ୍ରଭୃତି ଯାଯାବର ଜାତିଙ୍କ ଆକ୍ରମଣରେ ଛାରଖାର ଓ ବିଧ୍ୱସ୍ତ ହୋଇଯିବାରୁ ରୋମାନ ସମ୍ରାଟ କନଷ୍ଟାଣ୍ଟାଇନ୍ ଭୂମଧ୍ୟସାଗରେ ଓ କୃଷ୍ଣ ସାଗରକୁ ସଂଯୁକ୍ତ କରୁଥିବା ବସ୍ଫରସ ପ୍ରଣାଳୀଠାରେ ଏକ ନଗର ସ୍ଥାପନ କରି ପୂର୍ବ ସାମ୍ରାଜ୍ୟଠାରୁ ସ୍ୱତନ୍ତ୍ରର ଦ୍ୱିତୀୟ ରୋମାନ ସାମ୍ରାଜ୍ୟ ସ୍ଥାପନ କଲେ, ଯାହାର ଅସ୍ତିତ୍ୱ ୧୩୫୫ ଖ୍ରୀ: ଅ: ପର୍ଯ୍ୟନ୍ତ ରହିଥିଲା ।

ଏହି ନଗରର ସୁପ୍ରାଚୀନକାଳରୁ ପ୍ଲାଟୋ, ଆରିଷ୍ଟୋଟଲ, ପାଇଥା-ଗୋରାସ, ଇଉକ୍ଲିଡ୍, ହୋମର ପ୍ରଭୃତି କବି, ଦାର୍ଶନିକ, ଗଣିତଜ୍ଞ ଓ ବୈଜ୍ଞାନିକମାନଙ୍କ ଦ୍ୱାରା ଲିଖିତ ବହୁ ପୁସ୍ତକ ପଣ୍ଡିତମାନେ ଅତି ଯତ୍ନର ସହିତ ସାଇତି ରଖିଥିଲେ । ତୁରସ୍କମାନଙ୍କ କନଷ୍ଟାଣ୍ଟିନୋପଲ ଅଧିକାର ପରେ ଏହି ପୁସ୍ତକମାନଙ୍କୁ ହାତରେ ଧରି ପଣ୍ଡିତମାନେ କେତୋଟିର ଯୋଡ଼ିଏ ମୁକ୍ତ ବାଣିଜ୍ୟ ନଗରୀ ଭେନିସ ଓ ଜେନୋଆ ଓ ଭେନିସ ପ୍ରଭୃତି ଦେଶକୁ ପଳାଇଗଲେ । ସେତେବେଳକୁ ଇଉରୋପୀୟ ସମାଜଟି ଖ୍ରୀଷ୍ଟିୟାନ ହୋଇସାରିଲାଣି, ଏବଂ ଫ୍ରାନ୍ସ, ଇଂଲଣ୍ଡ ପ୍ରଭୃତି ବହୁ ରାଜ୍ୟ ରୋମାନ ସାମ୍ରାଜ୍ୟର ଧ୍ୱଂସ ପରେ ମୁକ୍ତ ହୋଇସାରିଲାଣି ।

ତୁରସ୍କମାନଙ୍କଦ୍ୱାରା କନଷ୍ଟାଣ୍ଟିନୋପଲ ଅଧିକାର ଏବଂ ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ଚଳୁଥିବା ବାଣିଜ୍ୟ କାରବାରର ଅବରୋଧ

ବସ୍ତୁ ଇତିହାସରେ ଏକ ଯୁଗାନ୍ତକାରୀ କ୍ରାନ୍ତିର ପ୍ରବର୍ତ୍ତକ ବୋର୍ଜ ମାର୍କ୍ସବାଦିକମାନଙ୍କର ଅଭିମତ ଅଟେ ।

ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ୧୩୫୫ ଠାରୁ ବାଣିଜ୍ୟ କାରବାର ବନ୍ଦ ହୋଇଯିବାରୁ ମାଂସାଶୀ ପାଶ୍ଚାତ୍ୟବାସୀ ବଡ଼ ଅସୁବିଧାରେ ପଡ଼ିଲେ; ବିନା ମସଲାରେ ସିଝା ମାଂସ ଖାଇବାକୁ ପଡ଼ିଲା । ଲୋକମାନେ ଉପାୟ ଖୋଜି ବସିଲେ, କେମିତି ଓ କପରି ପୁଣି ପ୍ରାଚ୍ୟ ଦେଶ ସହିତ ବାଣିଜ୍ୟ କରାଯିବ । ସେମାନଙ୍କ ଏହି ଉଦ୍‌ବେଳିତ ଓ ଆକୁଳ ଇଚ୍ଛା ଭାବନାମାନ ଧୀରେ ଧୀରେ ଚୂପାପ୍ଳୁତ ଓ ଅଭିବ୍ୟକ୍ତ ହେବାକୁ ଲାଗିଲେ । ସମାଜରେ ବହୁ ଲୋକଙ୍କର କୌଣସି ପ୍ରବଳ ତୃଷ୍ଣା, ପ୍ରବୃତ୍ତି ବା ଇଚ୍ଛା ଯଦି ବାଧାପ୍ରାପ୍ତ ହୁଏ ତେବେ ସେହି ବାଧିତ ପ୍ରବୃତ୍ତି ବା ଅବରୁଦ୍ଧ ଇଚ୍ଛା ନିଜର ତୃପ୍ତି ସାଧନ ପାଇଁ ଅନ୍ୟ ବାଟ ଖୋଜି ବାହାର କରିଥାଏ । ସମାଜର ବହୁ ଲୋକ ଯଦି ପ୍ରବଳ ଆବେଗରେ ସହିତ ଏକା ରକମର ଇଚ୍ଛା କରନ୍ତି, ତେବେ ସମାଜରେ ଏହି ଇଚ୍ଛା ଚୂପାପ୍ଳୁତ ଓ ଅଭିବ୍ୟକ୍ତ ହୋଇଯାଏ । ଅର୍ଥାତ ସେହି ଅବରୁଦ୍ଧ ବଳିଷ୍ଠ ଇଚ୍ଛା କୌଣସି ପ୍ରତିଭାଶାଳୀ ମନୁଷ୍ୟ ବେଶରେ ଜନ୍ମ ଲାଭ କରେ କିମ୍ବା କୌଣସି ଭାବପ୍ରବଣ ବ୍ୟକ୍ତିକ ବାଟ ବାଣିଯାଏ, ଯେଉଁ ବାଟରେ ଚାଲିଲେ ଏହି ଅବରୁଦ୍ଧ ଇଚ୍ଛାର ତୃପ୍ତି ବିଧାନ ଘଟିବ ।

୧୩୫୫ରୁ ୧୪୫୫ ଏହି ଶତେକଟି ବର୍ଷର ବ୍ୟବଧାନ ପରେ ପାଶ୍ଚାତ୍ୟ ସମାଜର ଏହି ଅବରୁଦ୍ଧ ଓ ଅତୃପ୍ତ ଇଚ୍ଛା କେତେଗୁଡ଼ିଏ ପ୍ରତିଭାଶାଳୀ ଶିଶୁବେଶରେ ଭୂପୃଷ୍ଠରେ ଅବତୀର୍ଣ୍ଣ ହେଲେ । ସେମାନେ ହେଲେ କଲମ୍ବସ, ଭାସ୍କୋଡାଗାମା, ମାଜେଲାନ୍, ଡ୍ରେକ, ରାଲେ ଏବଂ କାପ୍‌ଟେନ କୁକ୍ ପ୍ରଭୃତି ପ୍ରତିଭାଶାଳୀ ଦୁଃସାହସିକ ନାବିକ ।

ଏମାନଙ୍କ ମଧ୍ୟରେ କଲମ୍ବସ ତତ୍କାଳୀନ ପାଶ୍ଚାତ୍ୟ ସମାଜର ଆଶା ଆକାଂକ୍ଷାର ପ୍ରତୀକ ଓ ଅଗ୍ରଦୂତ ଥିଲେ । ଜେନୋଆ ଓ ଭେନିସ୍ ସହରର ଅନୁସନ୍ଧିତ୍ସୁ, ଶିକ୍ଷିତ ମାତ୍ର ବେକାର ଯୁବକ ନାବିକମାନେ ଏଥର ମୂଲ୍ୟବାନ ଗ୍ରୀକ ଗ୍ରନ୍ଥମାନଙ୍କ ସମ୍ପର୍କରେ ଆସିଗଲେ, ଯେଉଁ ଗ୍ରନ୍ଥସବୁକୁ ଧରି ପଣ୍ଡିତମାନେ ୧୩୫୫ରୁ କନଷ୍ଟାଣ୍ଟିନୋପଲରୁ ପଳାଇ ଆସିଥିଲେ । ଏହି ଅମୂଲ୍ୟ ଗ୍ରନ୍ଥଗୁଡ଼ିକ ସମ୍ପର୍କରେ ଆସିଲେ ଯୁବକ କଲମ୍ବସ । ସେ ଆର୍କିମେଡସ ଏବଂ ଇଉକ୍ଲିଡ୍ ପ୍ରଭୃତି ବୈଜ୍ଞାନିକ ଏବଂ ଗାଣିତିକମାନଙ୍କର ଅମର କୃତିମାନଙ୍କୁ ମନୋଯୋଗ ସହକାରେ ଅଧ୍ୟୟନ କଲେ । "ପୃଥିବୀ କମଳାଲେମ୍ବୁ ପରି ଗୋଲ ଅଟେ" ଏହି ସତ୍ୟର ପ୍ରମାଣ ସେ ଗ୍ରୀକ ବୈଜ୍ଞାନିକ ଗ୍ରନ୍ଥରୁ ପଢ଼ିବା ପରେ ବହୁତ ଚିନ୍ତନ ମନନ କରି ସିଦ୍ଧାନ୍ତ କଲେ ଯେ ଯଦି ମହା ଆଟଲାଣ୍ଟିକ ମହାସାଗର ବାଟେ ବୋଇତ ଚଳାଇ ପଶ୍ଚିମକୁ ଜଳ-ଯାତ୍ରା କରନ୍ତି, ତେବେ ଅଲବତ ଭାରତର ଉପକୂଳରେ ପହଞ୍ଚିବେ ।

୧୪୯୨ ଖ୍ରୀଷ୍ଟାବ୍ଦ ପୃଥିବୀ ଇତିହାସରେ ଅନ୍ୟ ଏକ ସ୍ମରଣୀୟ ବର୍ଷ ଅଟେ । ସ୍ପେନ ସରକାରଙ୍କ ପୃଷ୍ଠପୋଷକତାରେ ୭ଟି ମାତ୍ର ବୋଇତ ନେଇ ଦୁଃସାହସିକ ସେହି ଜେନୋଆଜନ୍ମା ଯୁବକ କଲମ୍ବସ ଶାବକଙ୍କୁ ମୁକ୍ତି ଦେଇ ଆଟଲାଣ୍ଟିକ ମହାସାଗର ବକ୍ଷରେ ଦକ୍ଷିଣକୁ ଜଳଯାତ୍ରା ଆରମ୍ଭ କରିଦେଲେ ଏବଂ ଦେହକୁ ପାଣିଛଡ଼ାଇ ଦେଇ, ମୂଲ୍ୟର ସମ୍ମୁଖୀନ ହେବାଦ୍ୱାରା ସେ ମୃତ୍ୟୁକୁ ଭୋଗାଇ ଏହି ମହାତୀର୍ଥ ଦ୍ୱାରା ସେ ପାଶ୍ଚାତ୍ୟର ସମୁଦ୍ରକୂଳବାସୀ ଅନ୍ୟ ଯୁବକମାନଙ୍କୁ ଉଦ୍‌ବୁଦ୍ଧ କରିଥିଲେ ।

ଆଜୁ ଖୋଜୁ ଖୋଜୁ ନିବଳରର ସନ୍ଧାନ ହେବା ପରେ କଲମ୍ବସଙ୍କ ଦୁଃସାହସିକ ସାଧନାରୁ ଦୁଇଟି ବିରାଟ ମହାଦେଶର ଆବିଷ୍କାର ହେଲା ।

୧୪୯୨ରୁ ୧୪୯୮ ଏହି ଛଅଟି ମାତ୍ର ବର୍ଷ ମଧ୍ୟରେ ଭାରତ, ଜାଭା, ସୁମାତ୍ରା ପ୍ରଭୃତି ପ୍ରାଚ୍ୟ ଭୂଖଣ୍ଡ ଏବଂ ଦୁଇଟିଯାକ ଆମେରିକା ମହାଦେଶକୁ ଇଉରୋପର ଯୁବକ ଦୁଃସାହସୀ ନାବିକମାନେ ମହାସାଗରସ୍ଥ ଜଳପଥ ଚିହ୍ନାଇଦେଲେ। ତୁରସ୍କମାନେ ପ୍ରାଚ୍ୟ ପାଶ୍ଚାତ୍ୟ ମଧ୍ୟରେ ଥିବା ଭୂମଧ୍ୟସାଗରସ୍ଥ ଜଳପଥକୁ ବନ୍ଦ କରିବାଦ୍ୱାରା ମଙ୍ଗଳମୟ ଭଗବାନ ତୁରସ୍କଜାତିଙ୍କ ନିମିତ୍ତ ମାତ୍ର କରି ଜଗତର ମଙ୍ଗଳ ହିଁ କରିଗଲେ। ସମଗ୍ର ଜଗତ ପରସ୍ପରର ନିକଟତର ହେବାକୁ ସୁବିଧା ସୁଯୋଗ ଆସିଗଲା। ଆମ ଚର୍ମ ଆଖିକି ଯାହା କିଛି ଅମଙ୍ଗଳ ବା ଅସୁନ୍ଦର ଦେଖାଯାଏ, ଦିବ୍ୟ ଦୃଷ୍ଟିରେ ଦେଖିଲେ ସେ ସବୁ ମଙ୍ଗଳ ଓ ସୁନ୍ଦର ଛଡ଼ା ଅନ୍ୟ କିଛି ହୋଇପାରେ ନାହିଁ।

ଖ୍ରୀଷ୍ଟାବ୍ଦ ୬୦୦ରୁ ୧୫୦୦ ଖ୍ରୀଷ୍ଟାବ୍ଦ ଭିତରେ ଅର୍ଥାତ୍ ଆଚାର୍ଯ୍ୟ ଶଙ୍କରଙ୍କ ତିରୋଭାବ ପରଠୁ ଶ୍ରୀ ଚୈତନ୍ୟ ଦେବଙ୍କ ତିରୋଭାବ ପର୍ଯ୍ୟନ୍ତ ଭାରତ ବେଦାନ୍ତ ଉପନିଷଦର କେବଳ ବିଦ୍ୟା ବା ଆତ୍ମଜ୍ଞାନକୁ ଧରି, ନାଚୁଛି କୁଦୁଛି; ଶିବୋଽହଂ ଶିବୋଽହଂ ବୋଲି ଭଜ ହୋଇଛି; "ହରେ ରାମ, ହରେ ରାମ, ରାମ ରାମ, ହରେ ହରେ, ହରେ କୃଷ୍ଣ, ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ" ଉଚ୍ଚ ସ୍ୱରରେ କୀର୍ତ୍ତନ କରି କେତେ ଉଦ୍ଦଣ୍ଡ ନାଚ ନାଚୁଛି। ଏହି ନାଚିବା କୁଦିବାରେହିଁ ସେ ଶାନ୍ତି ପାଇଲେ ବି ଅନ୍ଧକାରରେ ପଥ ଅଣ୍ଡାଳୁଛି। ଶକ, ହୂନ୍, କୁଶାଣମାନେ, ଆଫଗାନ, ତୁରସ୍କ ଏବଂ ମୋଗଲମାନେ ଭାରତର ଛାତି ଉପରେ ବସି ରକ୍ତ ଶୋଷିଛନ୍ତି; ସେ ହସି ହସି ସେମାନଙ୍କୁ ରକ୍ତ ଦେଇଛି।

ମାତ୍ର ଯୋଗୀ ଅରବିନ୍ଦଙ୍କ ଭାଷାରେ ଉପନିଷଦର ଅବିଦ୍ୟା ତତ୍ତ୍ୱକୁ ବା ବିଜ୍ଞାନକୁ ଭାରତ ଅବସ୍ତୁ ଓ ଅପଦାର୍ଥ କହି ଆଡ଼େଇ

ଦେଇଛନ୍ତି ଏବଂ ଅନ୍ଧାରରେ ପଥ ଅଣ୍ଡାଳୁଛନ୍ତି । ଶେଷରେ କରୁଣାସାଗର ଅଖିଳପତି ଗୋଗ୍ରବଣିକମାନଙ୍କୁ ନିମନ୍ତ୍ରଣ କରି ୧୬୦୦ ଖ୍ରୀଷ୍ଟାବ୍ଦରେ ଭାରତକୁ ପେଷିଲେ ବିଜ୍ଞାନର ମହାତ୍ମ୍ୟ ଶିକ୍ଷା ଦେବାକୁ ।

ବହିର୍ମୁଖିତ୍ୱ ଓ ଅନ୍ତର୍ମୁଖିତ୍ୱର ଅନୁପାତରେ ବୈଷମ୍ୟ ଘଟିଲେ ମନୁଷ୍ୟ ମାନସିକ ସ୍ୱାସ୍ଥ୍ୟ ହରାଇବସେ ।-ବୋଲି ସାଇକୋ-ଆନାଲିଷ୍ଟ ସିଗମଣ୍ଡ ଫ୍ରଏଡ଼ଙ୍କ ପ୍ରତିଭାଶାଳୀ ଓ ସୁପ୍ରସିଦ୍ଧ ଶିଷ୍ୟ ଡାକ୍ତର ୟୁଙ୍ଗଙ୍କ (Zung) ଅଭିମତ । ଯେ ବାହାର ଦୁନିଆକୁ କେବଳ ସତ୍ୟ ମନେ କରି, ଭିତର ଦୁନିଆକୁ ଦୃଷ୍ଟି ଦିଏ ନାହିଁ, ସେ ଅନ୍ତର୍ମୁଖିତ୍ୱକୁ ହରାଇବସି କେବଳ ବହିର୍ମୁଖୀ ହୋଇଯାଏ । ପୁଣି ଯେଉଁ ବ୍ୟକ୍ତି ବାହାର ଦୁନିଆକୁ ଭ୍ରମ, ମାୟା ବା ମିଥ୍ୟା ମନେକରେ ସେ ବାହାର ଜଗତ୍ ସଙ୍ଗରେ ସମ୍ପର୍କ ହରାଇ ଅନ୍ତର୍ମୁଖୀ ପାଲଟେ । ବ୍ୟକ୍ତି ପରି ଜାତି ବା ସମାଜ ବି ବହିର୍ମୁଖୀ ବା ଅନ୍ତର୍ମୁଖୀ ହୁଏ । ବହିର୍ମୁଖୀ ଜାତି ବିଜ୍ଞାନକୁ ଧରେ; ବିଜ୍ଞାନ ସାହାଯ୍ୟରେ ତାର ଅତୃପ୍ତ ଇଚ୍ଛା ତୃଷ୍ଣା ବା ପ୍ରବୃତ୍ତିମାନଙ୍କୁ ତୃପ୍ତ କରେ ।

ଅନ୍ତର୍ମୁଖୀ ଜାତି ବିଜ୍ଞାନକୁ ଏଡ଼ିଦେଇ ଆତ୍ମଜ୍ଞାନକୁ କୁଣ୍ଢାଏ: ଅନିଶ୍ଚିତ ଭାଗ୍ୟ ଏବଂ ଭଗବାନଙ୍କ ଉପରେ ନିର୍ଭର କରି ନାନା ଦ୍ୱନ୍ଦ୍ୱରେ ପଡ଼େ । ଜ୍ଞାନ, ଭକ୍ତି, କର୍ମ—ଏ ତିନୋଟିର ଏକଇ ସମାବେଶ ବିନା ଭଗବତ୍ ପ୍ରାପ୍ତି ହୁଏ ନାହିଁ । ସେପାଇଁ ଉଭୟ ଜ୍ଞାନ ଓ ବିଜ୍ଞାନ ଲୋଡ଼ା । ଭାରତ କେବଳ ଅନ୍ତର୍ମୁଖିତ୍ୱକୁ ଧରିରଖି ବାହାର ଜଗତକୁ ଭୁଲିବା ଦ୍ୱାରା ଫଳ କଣ ହୋଇଛି ? ସେ ବାହାର ଦୁନିଆରୁ ଗୋଇଠା ମାଡ଼ ଖାଇଛି । ବାହାର ଜଗତ ତାହାର ମୁଖରୁ ଭାତ ଛଡ଼ାଇ ନେଇଛି, ତା'ର ଅଣ୍ଟିରୁ କନା କାଢି

ନେଇଛନ୍ତି । ସେ ଏହାର ପ୍ରତିରୋଧ କରିନାହିଁ । ସେ ଶାନ୍ତିକୁ ଲୋଡ଼ି ଶାନ୍ତି ପାଉଛନ୍ତି ସତ ମାତ୍ର ଭୋଗ ସମୃଦ୍ଧି ବା ଐଶ୍ୱର୍ଯ୍ୟ ତାହା ତାଙ୍କୁ ଆସୁନାହିଁ ବା ତାର ସ୍ଥାନ ମଧ୍ୟ ନାହିଁ ।

ପକ୍ଷାନ୍ତରରେ ପାଶ୍ଚାତ୍ୟ ସମାଜ କେବଳ ବାହାର ଜୀବନକୁ ସତ ମନେକରି ଅନ୍ୟ ଏକ ଭ୍ରମ ଓ ବିପଦରେ ପଡ଼ିଛନ୍ତି । ସେ ଧର୍ମକୁ ଉପର ଠାଉରିଆ ଭାବରେ ଦେଖନ୍ତି । ଏହାକୁ ଦେଖାଣିଆ କରି ପକାଇଛନ୍ତି । ଯିଶୁଙ୍କୁ ସେ ଗଭୀର ଭାବରେ ନ ବୁଝି ତାଙ୍କର ଗଭୀର ତତ୍ତ୍ୱକୁ ବିଦ୍ରୂପ କରନ୍ତି । ସେ ତା'ର ଅତୃପ୍ତ ତୃଷ୍ଣା, ଅବରୁଦ୍ଧ ପ୍ରବୃତ୍ତିକୁ ତୃପ୍ତ କରିବାକୁ ଯାଇ ଆର୍କିମେଡ଼ିସ ଓ ଇଉକ୍ଲିଡ଼ଙ୍କ କୃତ ବିଜ୍ଞାନ ଶାସ୍ତ୍ରରୁ ବାଟ ଖୋଜନ୍ତି ଓ ପାଇନ୍ତି । ସେ ବାଇବେଲ ବା ପ୍ଲେଟୋଙ୍କ ଲେଖାରୁ କିଛି ରସ ପାଇନ । ଏଣୁ ୧୦୫୦ରୁ ମସଲାଶୂନ୍ୟ ସିଝା ମାଂସ ଖାଇ ଖାଇ ଯେଉଁ ଅତୃପ୍ତି ଓ ଅସନ୍ତୋଷର ଝଡ଼ ତାର ଅନ୍ତର ଭିତରେ ବୋହିଗଲା, ସେହି ଅତୃପ୍ତ ତୃଷ୍ଣା ଓ ପ୍ରବୃତ୍ତିର ତୃପ୍ତି ପାଇଁ ବାଇବେଲକୁ ଛାଡ଼ିଲା, ଯିଶୁଙ୍କୁ ଛାଡ଼ିଲା, ଧରିଲା ଆର୍କିମେଡ଼ ଓ ଇଉକ୍ଲିଡ଼ଙ୍କୁ । ଫଳରେ ତାହା ପାଖରେ ଆସି ମିଳିଲେ, ଭୋଗ, ଐଶ୍ୱର୍ଯ୍ୟ, ସାମ୍ରାଜ୍ୟ; ତା ପାଖରୁ ହଟିଗଲେ ଶାନ୍ତି ଓ ସନ୍ତୋଷ ।

ଖ୍ରୀଷ୍ଟାବ୍ଦ ୧୦୦ରୁ ୧୫୦୦ ଭିତରେ ଆମେ ଦେଖିବାକୁ ପାଇବା ଯେ ଉଭୟ ଭାରତ ଏବଂ ଇଉରୋପ ଏକ ଏକ ଖୋର ଆଣ୍ଡୁଆ ଟିଣ୍ଡୁପର ଆଚରଣ କରିଛନ୍ତି । ଭୋଗ ଓ ଐଶ୍ୱର୍ଯ୍ୟ ଲକ୍ଷ୍ମୀଙ୍କି ଭାରତ ବିଦେଶୀ ଆକ୍ରମଣକାରୀ ବଢ଼ାଇ ଦେଇ ଶାନ୍ତିକୁ ଆଦରି ନେଇଛନ୍ତି । ଇଉରୋପ ରୋମର ଐଶ୍ୱର୍ଯ୍ୟ ଲକ୍ଷ୍ମୀଙ୍କି ହରାଇ ବସି ତୃଷ୍ଣାର ଶିକାର ହୋଇ ଶାନ୍ତିଦେବୀଙ୍କି ସୈତାନ ହାତରେ ଦେଇଛନ୍ତି ଏବଂ ଭୋଗ ଖୋଜନ୍ତି । ଏଣୁ କରୁଣାସାଗର ଈଶ୍ୱରଙ୍କ ଦୟା

ଭାରତକୁ ଶାନ୍ତି ଦେଲେ ମାତ୍ର ତାକୁ ଭୋଗ ଐଶ୍ୱର୍ଯ୍ୟରୁ ବଞ୍ଚିତ କଲେ; ସେ ଇଂରେଜକୁ ଦେଲେ ଭୋଗ, ଐଶ୍ୱର୍ଯ୍ୟ ଓ ସାମ୍ରାଜ୍ୟ ମାତ୍ର ଶାନ୍ତି ଦେଲେ ନାହିଁ ।

"ଯେ ଯଥା ମାଂ ପ୍ରପଦ୍ୟନ୍ତେ,
ତାନ୍ ତଥା ଭଜାମ୍ୟହଂ ।" (ଗୀତା)

ଯେ ଯେଉଁପରି ଇଚ୍ଛା କରେ, ସେ ଇଚ୍ଛା ଯଦି ଦୃଢ଼ ଓ ଐକାନ୍ତିକ ଥାଏ, ସେ ଇଚ୍ଛାର ପୂରଣ ପାଇଁ ବାଟ ମଧ୍ୟ ଖୋଲି ଦଅନ୍ତି ଭଗବାନ ।

ବହିର୍ମୁଖିତ୍ୱ ଏବଂ ଅନ୍ତର୍ମୁଖିତ୍ୱ ଏହି ଉଭୟବୃତ୍ତି ମଧ୍ୟରେ ସାମ୍ୟ ରକ୍ଷିବା ଦ୍ୱାରା ହିଁ, ବାହାର ଜଗତ ଏବଂ ଭିତର ଜଗତ ଉଭୟବୃତ୍ତି ପ୍ରତି ଦୃଷ୍ଟି ଦେବା ଦ୍ୱାରା ହିଁ, ବିଦ୍ୟା ଅବିଦ୍ୟା, ଆତ୍ମଜ୍ଞାନ ଓ ବିଜ୍ଞାନ ଉଭୟର ଶମ୍ଯକ ମନନ ଓ ପ୍ରୟୋଗ ଦ୍ୱାରା ହିଁ ବ୍ୟକ୍ତି ତଥା ଜାତିର ପୂର୍ଣ୍ଣତା ଘଟେ ।



# ଦଶମ ଅଧ୍ୟାୟ

## ନରମେଧଯଜ୍ଞବିସ୍ତାର କାରଣ ଏବଂ ଫଳାଫଳ

( ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୯୭୭ )

ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୯୭୭ ପର୍ଯ୍ୟନ୍ତ ଇତିହାସକୁ ନିମ୍ନଲିଖିତ କେତୋଟି ବିଭାଗରେ ବିଭକ୍ତ କରାଯାଇପାରେ ।

ପୁରାତନ ପ୍ରସ୍ତର ଯୁଗରୁ ଖ୍ରୀଷ୍ଟାବ୍ଦ ୬୦୦ ପର୍ଯ୍ୟନ୍ତ ମାନବସମାଜ ଶୈଶବ, ଯୌବନ, ପ୍ରୌଢ଼ତ୍ୱ ଓ ବାର୍ଦ୍ଧକ୍ୟ ଏହିପରି ଚାରୋଟି ଅବସ୍ଥା ଦେଇ ଗତି କରିଛି । ଖ୍ରୀ: ପୂ: ୬୦୦ରୁ ଖ୍ରୀ: ଅ: ୬୦୦ ମଧ୍ୟରେ ସମାଜର ପରିପକ୍ୱତା ଯୁଗ ଆସିଥିଲା ବୋଲି ଆଗରୁ କହିଛୁ । ବର୍ତ୍ତମାନ କହିବା ରହିଛି ଯେ ଉଭୟ ଭାରତ ଓ ପାଶ୍ଚାତ୍ୟ ସମାଜର ପରିପକ୍ୱତା ଅପୂର୍ଣ୍ଣ ରହିଛି । ଭାରତ ବେଦାନ୍ତ ସତ୍ୟକୁ ଏଡ଼ାଇ ଦେଇ ଖ୍ରୀ. ପୂ: ୬୦୦ରୁ ଖ୍ରୀ: ଅ: ୬୦୦ ପର୍ଯ୍ୟନ୍ତ କେବଳ ଆତ୍ମଜ୍ଞାନକୁ ଧରି ବସିଲା । ବାହାର ଜଗତ ବା ବିଜ୍ଞାନର ଜଗତକୁ ମାୟା, ଭ୍ରମ ବୋଲି ବର୍ଜନ କରି ଅନ୍ଧାରରେ ବାଡ଼ ବୁଲାଇଲା । ଠିକ୍ ସେହିପରି ଇଉରୋପ ଖ୍ରୀ: ପୂ: ୬୦୦ ରୁ ଖ୍ରୀଷ୍ଟାବ୍ଦ ୬୦୦ ମଧ୍ୟରେ ସୋକ୍ରେଟିସ ଏବଂ ଯୀଶୁଙ୍କୁ ନ୍ୟାୟ ନାମରେ ବର୍ବର କରି ହତ୍ୟା କରିବା ଦ୍ୱାରା ଆତ୍ମଜ୍ଞାନକୁ ପ୍ରତ୍ୟାଖ୍ୟାନ କଲା । ବାହାର ଜଗତ ବା ବିଜ୍ଞାନ ଜଗତକୁ ସତ୍ୟ ବୋଲି ସାବ୍ୟସ୍ତ କରିନେଲା ଏଣୁ ଅନ୍ଧାରରେ ବାଡ଼ ବୁଲାଇଲା ।

(୧) ଖ୍ରୀଷ୍ଟାବ୍ଦ ୧୫୦୦ରୁ ୧୯୦୦ ଏହି ଗ୍ରହଣେନ୍ଦ୍ର ବର୍ଷକୁ ବୈଶ୍ୟଯୁଗ କୁହାଯାଇପାରେ । ୟୁରୋପୀୟ ସମାଜ ବହିର୍ମୁଖୀ ହୋଇଥିବାରୁ ତାର ଅବରୁଦ୍ଧ ତୃଷ୍ଣା ଓ ପ୍ରବୃତ୍ତିକୁ ତୃପ୍ତ କରିବାକୁ ବଳ୍କାନର ଆଶ୍ରୟ ନେଇଛି ନାନା ବୈଜ୍ଞାନିକ ଆବିଷ୍କାର ଉଦ୍ଭାବନ କରିଛି, ସାମ୍ରାଜ୍ୟ ଓ ଉପନିବେଶମାନ ସ୍ଥାପନ କରିଛି, ଇଜରୋଡ ପ୍ରେୟ ଓ ଶ୍ରେୟ ମଧ୍ୟରେ ସମାଧାନ କରି ନ ପାରି ଅନ୍ତରେ ପ୍ରେୟକୁ ଆଦରି ଠକାମିରେ ପଡ଼ିଛି । ସେ ଭୋଗ କରିଛି ଏବଂ ଐଶ୍ୱର୍ଯ୍ୟରେ ବୁଡ଼ିଯାଉଛି ମାତ୍ର ଶାନ୍ତି ଓ ଧୃତି ପାଇନି । ୧୫୦୦ରୁ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାର ଭୋଗତୃଷ୍ଣା, ଧନତୃଷ୍ଣା, ଲୁଣ୍ଠନ ଓ ଶୋଷଣ ମନୋବୃତ୍ତି ବଢ଼ି ବଢ଼ି ୧୯୦୦ ବେଳକୁ ନିଜର ଧ୍ୱଂସର ଗର୍ତ୍ତ ନିଜେ ଖୋଳିବାକୁ ପ୍ରସ୍ତୁତ ହୋଇଛି ।

ପକ୍ଷାନ୍ତରେ ଏହି ଦୁଇଶହ ବର୍ଷରେ ଭାରତୀୟ ସମାଜ ବୁଦ୍ଧଙ୍କ ବେଳରୁ କେବଳ ମାତ୍ର ଅନ୍ତର୍ମୁଖୀ ହୋଇ ରହିଥିବାରୁ, ସେ ସଂସାର, ସମାଜଠାରୁ ଆଡ଼େଇ ହୋଇ ରହିଛି । ତାର ଯେଉଁ ନାଳନ୍ଦା, ତକ୍ଷଶୀଳା, ପୁଷ୍ପଗିରି ପ୍ରଭୃତି ବିଶ୍ୱବିଦ୍ୟାଳୟଗୁଡ଼ିକ ଗଢ଼ି ଉଠିଥିଲା, ସେଗୁଡ଼ିକୁ ସେ ଦୀର୍ଘକାଳ ଧରି ରକ୍ଷା କରିପାରିନି । ଶକ, ହୂନ, କୁଶାନ, ଆରବ, ଆଫଗାନମାନେ ତାର ନଗର, ଗ୍ରାମ, ମନ୍ଦିର ଲୁଣ୍ଠନ ଓ ଧ୍ୱଂସ କରିଛନ୍ତି । ଅଜ୍ଞାନ ଶିଶୁଙ୍କ ପରି ସେ କେବଳ କୌତୁକରେ ଜଳ ଜଳ ଚାହିଁ ରହିଛି : ଏ ସବୁକୁ ଖେଳ ମନେ କରି କରି ଖାଲି ତାଳି ମାରି ହସିଛି କମ୍ବା ପ୍ରତିବେଶୀ ମାତ୍ର ଉରକୁଳା ବାଳକଙ୍କ ପରି ସେ ଏହି ଲୁଣ୍ଠନକାରୀମାନଙ୍କୁ ଲୁଣ୍ଠନରୁ ନିବୃତ୍ତ ହେବାକୁ ଲାଞ୍ଚ ଯାଚିଛି ।

୧୫୦୦ ଖ୍ରୀଷ୍ଟାବ୍ଦରୁ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦିଲ୍ଲୀରେ ମୋଗଲବାଦସାହା ଓ ବ୍ରିଟିଶ ଶାସକମାନଙ୍କ ଭୋଗବିଳାସ ଓ

ଐଶ୍ୱର୍ଯ୍ୟ ସମ୍ଭାର ଦେଖି ଭାରତର ଗ୍ରାମ୍ୟ ସମାଜଟି ନିଜକୁ ଆହୁରି ବେଶୀ ସଙ୍କୁଚିତ କରି ନେଇଛି ଏବଂ ମୋଗଲମାନଙ୍କୁ, ଇଂରେଜମାନଙ୍କୁ ମ୍ଳେଚ୍ଛ ବୋଲି ନାମ ଦେଇ ଆତ୍ମସନ୍ତୋଷ ଲଭିଛି ।

ଜଣେ ଯୁବକ କୋଟିପତି ସେଠର ବୈରାଗ୍ୟ ଆସିଲେ, ତାର ସମ୍ପତ୍ତିବାଡ଼ିକି ତାର ପଡ଼ୋଶୀ ବା ଶତ୍ରୁମାନେ କମ୍ବା ଚୋର ଡକାୟତମାନେ ଲୁଣ୍ଠନ କରିଲେ, ସେ ସେଥିରେ ହାତଟି ପର୍ଯ୍ୟନ୍ତ ଉଠାଏ ନାହିଁ, ଏବଂ ସବୁ ହରିଙ୍କ ଇଚ୍ଛା ବୋଲି କହେ ଭାରତର ଗ୍ରାମ୍ୟ ସମାଜର ଶଷ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ହଠାତ୍ ବୈରାଗ୍ୟ ଓ ଉଦାସୀନତାରେ ଅଭିଭୂତ ଏହି କୋଟିପତି ଯୁବକ ସେଠଟି ପରି ଥିଲା । ଭାରତ ବାହାର ଜଗତକୁ ଏଡ଼ି ଦେଇ ଭିତର ଦୁନିଆକୁ ଧରିବାରୁ ଶାନ୍ତି ପାଇଛି ସତ୍ୟ, ମାତ୍ର ସେ ଐଶ୍ୱର୍ଯ୍ୟରୁ ବଞ୍ଚିତ ହୋଇଛି, ଲୁଣ୍ଠିତ ହୋଇଛି ।

(୨) ଖ୍ରୀଷ୍ଟାବ୍ଦ ୧୯୦୦ଠାରୁ ୧୯୫୦ । ଏହି ୫୦ ବର୍ଷ ମଧ୍ୟରେ ଉଭୟ ସମାଜକୁ ପୌଢ଼ତ୍ୱର ଯୁଗ କୁହାଯାଏ । ଯୌବନରେ ବିବାହିତ ଜୀବନରେ ମନୁଷ୍ୟର ଯେତେବେଳେ ପିଲାଛୁଆ ହୁଅନ୍ତି, ପରିବାର ବଢ଼ିଯାଏ, ସେ ସେତେବେଳେ ସେମାନଙ୍କ ଉପରେ ଶାସନ କ୍ଷମତା ମୁରବୀଟିର ଜାରି କରେ । ଯୌବନରେ ସଞ୍ଚୟ ସଂଗ୍ରହ ପ୍ରବୃତ୍ତି ଯାହାକୁ ପୌଢ଼ାବସ୍ଥାରେ କ୍ଷମତା ପ୍ରୟୋଗ କରିବାର ଏକ ସ୍ୱଭାବ ଜନ୍ମେ । ଖ୍ରୀ: ପୂ: ୪୦୦୦ରୁ ଅର୍ଥାତ୍ ଆର୍ଯ୍ୟଜାତିର ଅଭ୍ୟୁଦୟ ଓ ଅଭିଯାନ ବେଳରୁ ଖ୍ରୀ: ପୂ: ୬୦୦ ପର୍ଯ୍ୟନ୍ତ ମାନବ ସମାଜରେ ଏହି କ୍ଷମତା-ତୃଷ୍ଣାର ବା କ୍ଷତ୍ରିୟ ପ୍ରବୃତ୍ତିର ବିକାଶ ଘଟିଥିଲା ବୋଲି ମୁଁ ପୂର୍ବରୁ ଦର୍ଶାଇଛି । ୧୯୦୦ରୁ ୧୯୫୦ ମଧ୍ୟରେ ମନୁଷ୍ୟ ସମାଜରେ ଏହି କ୍ଷାତ୍ର ସ୍ୱଭାବର ପୂର୍ବଠାରୁ ମାର୍ଜିତତର ଏବଂ ଉନ୍ନତତର ପୁନରାବୃତ୍ତି ଘଟିଛି,

ଅଦ୍ୟାପି ଏହା ଯୋଗୁଁ ପୃଥିବୀବ୍ୟାପୀ ନରମେଧ ଯଜ୍ଞର ସୃଷ୍ଟି କରିଥିଲା । ମାନ୍ କ୍ଷମତାତୃଷ୍ଣାର ମୂଳରେ ଯେଉଁ ଅମାର୍ଜିତ ଓ ଅଶୋଧିତ ସ୍ୱଭାବ ରହିଥାଏ, ସେହି ଅମାର୍ଜିତ ସ୍ୱଭାବକୁ ପରିମାର୍ଜିତ କରିନେଇ ସ୍ୱଧର୍ମରେ ରୂପାନ୍ତରିତ କରି ସେହି ସ୍ୱଧର୍ମବଳରେ ଗୋଟିଏ ନିରସ୍ତ୍ର ଜାତି କପରି ଗୋଟିଏ ସଶସ୍ତ୍ର ଜାତି ଉପରେ ବିଜୟ ହାସଲ କରିପାରେ, ସେହି ସତ୍ୟଟି ବି ଏହି ପଚିଶତି ବର୍ଷର ଇତିହାସରେ ପ୍ରମାଣିତ ହୋଇଛି, ମହାତ୍ମାଜୀଙ୍କ ଅହିଂସ ସତ୍ୟାଗ୍ରହଦ୍ୱାରା ।

ଅନ୍ୟାୟ ଅନ୍ୟାୟ ମଧ୍ୟରେ ଲଢ଼ାଇ ହେଲେ ଯେଉଁ ଅନ୍ୟାୟକାରୀ ପାଖରେ ବେଶୀ ବୁଦ୍ଧି ବଳ ବା ବଞ୍ଚନ କୌଶଳ ଥାଏ, ସେ ପ୍ରଥମେ ଜିତି ଯାଏ, ମାତ୍ର ପରସ୍ପର ସଂଘର୍ଷରୁ ଉଭୟ ଅନ୍ୟାୟକାରୀଙ୍କର ପତନ ସୁନିଶ୍ଚିତ । ଫରାସୀ ଓ ଇଂରେଜମାନେ ଅନ୍ୟାୟ ଦ୍ୱାରା ସାମ୍ରାଜ୍ୟ ଓ ଉପନିବେଶମାନ ପ୍ରତିଷ୍ଠା କରିଥିଲେ । ଜର୍ମାନି, ଜାପାନ, ଇଟାଲି ସେହିପରି ଅନ୍ୟାୟ ଶିକାର ହୋଇ ସାମ୍ରାଜ୍ୟ ପ୍ରତିଷ୍ଠାର ଲାଳସୀ ହୋଇ ବିଶ୍ୱଯୁଦ୍ଧର ଉଦ୍‌ଯୋଗପର୍ବ ଆରମ୍ଭ କରିଦେଲେ ଫଳତଃ ଉଭୟର ପତନ ଘଟିଲା । ତୃଷ୍ଣା ତୃଷ୍ଣା ମଧ୍ୟରେ ଲଢ଼ାଇ ହେଲେ ଯେଉଁ ତୃଷ୍ଣାର ଅଧିକାରୀ ପାଖରେ ବେଶୀ ବୁଦ୍ଧି ବଳ ବା ଉପାୟ ଥାଏ, ସେହି ପ୍ରଥମେ ବିଜୟ ହାସଲ କରି ଆଗକୁ ଆଗକୁ ମାଡ଼ିଯାଏ । ମାତ୍ର ଶେଷକୁ ଉଭୟ ପକ୍ଷର ପତନ ଘଟେ । ମିତ୍ରଶକ୍ତି ଓ ଅକ୍ଷଶକ୍ତି ମଧ୍ୟରେ ଯୁଦ୍ଧର ପରିଣତିରୁ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ପଡ଼ୁଛି । ଜର୍ମାନର ଅତୃପ୍ତ ଅବରୁଦ୍ଧ ପ୍ରବୃତ୍ତିରୁ ଅନିୟନ୍ତ୍ରିତ କ୍ଷମତାତୃଷ୍ଣାର ଜାଗରଣ ହେଲା । ଫରାସୀ, ଇଂରେଜ ପ୍ରଭୃତିଙ୍କର ସୀମାତୀତ ଭୋଗତୃଷ୍ଣା, ସାମ୍ରାଜ୍ୟ ଉପନିବେଶ ବିସ୍ତାର ଦେଖି, ଦୁର୍ଦ୍ଦାନ୍ତ କ୍ଷମତାନ୍ଧ କ୍ଷତ୍ରିୟ କାର୍ତ୍ତବୀର୍ଯ୍ୟ ଯମଦଗ୍ନିଙ୍କର କାମଧେନୁକୁ ଆଗେଇ ଯେଉଁ ପରିଣାମ ଭୋଗିଥିଲେ ୧୯, ୨ସୁ

୧ ଶ୍ୱଯୁଦ୍ଧ ପରେ ସେହି କଥା ପ୍ରମାଣିତ ହେଲା । ଜର୍ମାନ କ୍ଷମତାଗର୍ବୀ ସମ୍ରାଜ୍ୟବାଦୀଙ୍କ ଦଶା ଭାଙ୍ଗିଲା । ସାମ୍ରାଜ୍ୟ ଉପନିବେଶ ଭୋଗୁଥିବା ଜାତିଙ୍କର ଜମଦଗ୍ନି ଦଶା ଘଟିଲା । ସେମାନେ ସାମ୍ରାଜ୍ୟ ଓ ଉପନିବେଶ ହରାଇଲେ । ଗର୍ବ ପର୍ବତରୁ ପଣ୍ଡ ଖସି ପଡ଼ିଲା ।

(୩) ଖ୍ରୀଷ୍ଟାବ୍ଦ ୧୯୫୦ରୁ ସମଗ୍ର ମାନବ ସମାଜରେ ପୁନରାବର୍ତ୍ତନ କରୁଛି ତାହା ଅନୁସନ୍ଧିତ୍ସା ବା ପରୀକ୍ଷଣ ଯୁଗ ଯାହାକି ଖ୍ରୀ: ପୂ: ୬୦୦ରୁ ୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବ୍ୟାପି ରହିଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ବିଶ୍ୱମାନବ ଜାତିକୁ ପୁଣି ଏକ ଅନୁସନ୍ଧିତ୍ସା ଅନୁଶାସନ ଓ ଆତ୍ମସମୀକ୍ଷା ପାଇଁ ବିଶ୍ୱ-ଚେତନାରୁ ନିର୍ଦ୍ଦେଶ ଆସିଛି । ପ୍ରତ୍ୟେକ ବ୍ୟକ୍ତି, ବା ଜାତି ନିଜକୁ ଅନ୍ୟଠାରୁ ଏକ ବିଚ୍ଛିନ୍ନ ଚେତନାର ଅଭିବ୍ୟକ୍ତି ଭାବ ଅନ୍ଧାରରେ ବିଚରୁଥିବ ନା ଏକ ଅଖଣ୍ଡ ବିଶ୍ୱଚେତନାର ଗୋଟିଏ ଗୋଟିଏ ମାତ୍ର ଅଭିବ୍ୟକ୍ତି ବୋଲି ଉପଲବ୍ଧି କରି ପରସ୍ପରକୁ ଆପଣାର ମନେ କରିବ, ସେହି ସତ୍ୟକୁ ପୁନରାବିଷ୍କାର କରିବାର ବେଳ ଆଜି ପହଞ୍ଚିଛି ।

୧୯୫୦ଠାରୁ ଏ ପର୍ଯ୍ୟନ୍ତ ଗୋଟିକ ପରେ ଗୋଟିଏ କରି ଘଟଣା ଅତି ଅଳ୍ପ ସମୟ ବ୍ୟବଧାନ ମଧ୍ୟରେ ଘଟିଯାଉଛି ସେଉଁ ସବୁ ଘଟଣା ଏପରି ଅପ୍ରତ୍ୟାଶିତ ଓ ଚମତ୍କାରପ୍ରଦ ଭାବରେ ଘଟି ଚାଲିଛି, ମୋର ତ ମନେ ହେଉଛି, ସେହି ଶୁଭ ମୁହୂର୍ତ୍ତର ଆଉ ବେଶୀ ଡେରି ନାହିଁ ଯେଉଁ ଶୁଭଲଗ୍ନରୁ ବୁଦ୍ଧ, ଯିଶୁ, ମହମ୍ମଦ, ଗାନ୍ଧି, ଅରବିନ୍ଦଙ୍କ ସ୍ୱପ୍ନ ଓ ଆଦର୍ଶକୁ ସମଗ୍ର ପୃଥିବୀ ପ୍ରେମର ସହିତ ନତ ମସ୍ତକରେ ଗ୍ରହଣ କରିପିବ ଏବଂ ଅର୍ଥନୀତି, ରାଜନୀତି ଏବଂ ସମାଜ ନୀତିରୁ ଅସୁର ଶକ୍ତିକ ହଟାଇ ଦେବ ।

---

# ଏକାଦଶ ଅଧ୍ୟାୟ

## ଅନୁସନ୍ଧିତ୍ସା ଯୁଗର ପୁନରାବୃତ୍ତିର ଶୁଭଲଗ୍ନ

( ଜାନୁଆରୀ ୨୬ ତାରିଖ ୧୯୫୦ )

ଖ୍ରୀ: ପୂ: ୬୦୦ଠାରୁ ଖ୍ରୀଷ୍ଟାବ୍ଦ ୬୦୦ ଏହି ଏକହଜାର ବର୍ଷକୁ ମୁଁ ମାନବର ଅନୁସନ୍ଧିତ୍ସା ଯୁଗ ବୋଲି ପୂର୍ବରୁ ଉଲ୍ଲେଖ କରିଛି । ବ୍ୟକ୍ତିର ବାର୍ଦ୍ଧକ୍ୟ ଅବସ୍ଥାକୁ ପରିପକ୍ୱ ଅବସ୍ଥା କୁହାଗଲାପରି ଏହି ହଜାରବର୍ଷକୁ ମାନବଜାତିର ପରିପକ୍ୱ ଅନୁଭୂତି ଓ ବିଶ୍ୱରମନ୍ଥନର ଏକ ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଯୁଗର ପୁନରାବୃତ୍ତିର ଶୁଭଲଗ୍ନଟିକୁ ମୁଁ ୨୬ ଜାନୁଆରୀ ୧୯୫୦ ବୋଲି ଜାହିର କରୁଛି । ତାହାର କାରଣ ମୋର ଦୃଷ୍ଟିଭଙ୍ଗିରୁ ବିଚାର କରି ମୁଁ ମନରେ ବାଛିଲି । ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଭାଷାରେ ମୁଁ ତ କହିବି ଯେ ଯାହାର ଦୃଷ୍ଟି ଯେପରି ତାହାର ସୃଷ୍ଟି ସେହିପରି ।

ଭାରତ ଆତ୍ମଶକ୍ତି ଏବଂ ଅହିଂସା ଅସ୍ତ୍ରବଳରେ ୧୯୪୭ ଅଗଷ୍ଟ ୧୫ରୁ ଇଂରେଜ ଶାସନରୁ ମୁକ୍ତ ହେଲା । ଶାସନ ସମ୍ବିଧାନ ଗଢ଼ାଯାଇ ୨୬ ଜାନୁଆରୀ ୧୯୫୦ରୁ ଭାରତକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ବୋଲି ଘୋଷଣା କରାଗଲା । ଏହି ଘୋଷଣାଦ୍ୱାରା ଭାରତ ଏହାହିଁ ପ୍ରତିପାଦନ କଲା ଯେ ଭାରତର ଗ୍ରାମଗୁଡ଼ିକ ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱାବଲମ୍ବୀ ସ୍ୱୟଂଶାସିତ

ସାଧାରଣତନ୍ତ୍ର ଥିଲା ଏବଂ ହସ୍ତିନାପୁର, ଦିଲ୍ଲୀ, ପାଟଳୀପୁତ୍ର ଇତ୍ୟାଦି ଜଣେ ଜଣେ ସମ୍ରାଟ, ଚକ୍ରବର୍ତ୍ତୀ, ବାଦଶାହା, ରାଜା ବା ନବାବ ଏହି ଗ୍ରାମ୍ୟରାଜ୍ୟଗୁଡ଼ିକର [illegible] ବା ହସ୍ତକ୍ଷେପ କରୁ ନ ଥିଲେ, ମାତ୍ର ସେମାନଙ୍କର ଦୁର୍ବଳତାର ସୁଯୋଗ ନେଇ ବ୍ରିଟିଶ ଜାତି ଭାରତର ପ୍ରଭୁ ହୋଇ ବସିଲେ । ସେମାନେ ଗ୍ରାମ୍ୟ ଅର୍ଥନୀତିକୁ ଧ୍ୱଂସ କରି ଭାରତକୁ ନାନା ଭାବରେ ଶୋଷଣ ଲୁଣ୍ଠନ କଲେ । ସୁତରାଂ ଏଣିକି ଭାରତ ଉପରେ କେହି ରାଜା ରାଜୁଡ଼ା ଜମିଦାର ରହିବେ ନାହିଁ । ଭାରତ ନିଜେ ନିଜ କଥାର ଫଇସଲା କରିବ ।

ଅନ୍ୟ ଏକ ଦୃଷ୍ଟିରୁ ୧୯୫୦ ଅଙ୍କଟି ବିଶ୍ୱ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ବିଭାଜକ ରେଖାପରି । ଏହା ପୂର୍ବରୁ କେତୋଟି ଘଟଣା ଏବଂ ପରବର୍ତ୍ତୀ କେତୋଟି ଘଟଣାରୁ ମୁଁ ମନେକରେ ଦୁଇଟି ଆଦର୍ଶ ବା ଦର୍ଶନ ଭିତରେ ଆଦର୍ଶଗତ ଯୁଦ୍ଧ ଲାଗିଯାଇଛି ।

୧୯୧୯ରେ ସୋଭିଏଟ୍ ରୁଷିଆର ଜନ୍ମବେଳରୁ ଏକ ନୂତନ ଆଦର୍ଶ ବା ଦର୍ଶନର ପ୍ରତିଷ୍ଠା ହେଲା । ଏହି ଦର୍ଶନର ପ୍ରତିରୋଧ ଦକ୍ଷିଣ ଦିଗରୁ ଆସିଲା । ଅନିୟନ୍ତ୍ରିତ ଓ ବ୍ୟକ୍ତିଗତ ତୃଷ୍ଣା ଉପରେ ପ୍ରତିଷ୍ଠିତ ପାଶ୍ଚାତ୍ୟ ସମାଜ ଏହାକୁ କୂଟନୀତି ଓ ତରବାରିବଳରେ ରୋଧ କରିବାକୁ ଚେଷ୍ଟିତ ହେଲା, ଯାହାର ଫଳରେ କି ୧୯୩୦ରେ ହିଟଲରଙ୍କର ପାଶ୍ଚାତ୍ୟ ଆକାଶରେ ଏକ ଧୂମକେତୁପରି ଉଦୟ ହେଲା ।

୧୯୨୧ରୁ ମହାତ୍ମା ଗାନ୍ଧିଙ୍କ ଅହିଂସା ସୂଚକ ଅସହଯୋଗ, ପରବର୍ତ୍ତୀ ଲବଣ ସତ୍ୟାଗ୍ରହ, ଭାରତଛାଡ଼ ଆନ୍ଦୋଳନରେ ଯେଉଁ ଆଦର୍ଶ ବା ଦର୍ଶନ ଅଛି ତାହା ଅନିୟନ୍ତ୍ରିତ ବ୍ୟକ୍ତିଗତ ତୃଷ୍ଣା

ଉପରେ ପ୍ରତିଷ୍ଠିତ ପାଶ୍ଚାତ୍ୟ ସମାଜର ବ୍ୟକ୍ତି ପରତନ୍ତ୍ର ଦର୍ଶନ ବିରୁଦ୍ଧରେ ଯେପରି ଉଦ୍ଦିଷ୍ଟ, ଠିକ ସେହିପରି ସତ୍ୟଶିବ ସୁନ୍ଦର ମୂଲ୍ୟବୋଧକୁ ବା ସଚ୍ଚିଦାନନ୍ଦ ତତ୍ତ୍ୱକୁ ଅସ୍ୱୀକାର କରୁଥିବା ମାର୍କସୀୟ ଦର୍ଶନ ବିରୁଦ୍ଧରେ ବି ଉଦ୍ଦିଷ୍ଟ ।

ମହାତ୍ମାଜୀଙ୍କ ମହାପ୍ରୟାଣ ୧୯୪୮ରେ ଘଟିଲା ଏବଂ ଯୋଗୀ ଅରବିନ୍ଦଙ୍କ ଅନ୍ତିମ ସମାଧି ୧୯୫୦ରେ ହେଲା । କାୟାମୁକ୍ତ ହେବା ପରେ ମହାମାନବ ଓ ପ୍ରତିଭାଶାଳୀ ପୁରୁଷଙ୍କ ଭାବମାନ ଦ୍ରୁତଗତିରେ ମନୁଷ୍ୟ ସମାଜରେ ଖେଳିଯାଏ । ବର୍ତ୍ତମାନ ଏ ଦୁହିଁଙ୍କ ଆଦର୍ଶର ପ୍ରଭାବ ସାରା ଜଗତରେ ପ୍ରଭାବ ବିସ୍ତାର କରି ଚାଲିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ମଧ୍ୟରେ ପ୍ରତିଷ୍ଠିତ ମିଳିତ ଜାତିସଂଘର ବିଦ୍ୟମାନତାରୁ ଏହା ହିଁ ସାବ୍ୟସ୍ତ ହେଉଛି ଯେ, ସାରା ଜଗତର ସବୁ ମନୁଷ୍ୟମାନେ ଗୋଟିଏ ପରିବାର ପରି ଚଳି ନ ଶିଖିଲେ ଧ୍ୱଂସ ପାଇଯିବେ । ସାରା ଜଗତରେ ଗୋଟିଏ ମାତ୍ର ଶାସନ ସଂସ୍ଥା ରହିବ; ଏବଂ ପୃଥିବୀର ପ୍ରତ୍ୟେକ ଗ୍ରାମ ଗୋଟିଏ ଗୋଟିଏ ସ୍ୱାବଲମ୍ବୀ ସ୍ୱୟଂ-ଶାସିତ ଶାସନ ଏକକ ହେବ । (ଭାରତର ବ୍ରାହ୍ମଣ ଅଧ୍ୟୁଷିତ ଗ୍ରାମମାନଙ୍କୁ ଅଦ୍ୟାପି ଶାସନ ବୋଲି କୁହାଯାଏ । ଏହାର ତତ୍ତ୍ୱାର୍ଥ ଏହା ହିଁ ଯେ ଗ୍ରାମହିଁ ସ୍ୱୟଂଶାସିତ ଶାସନ-ଏକକ ଅଟେ । )

ନାଗାସାକି ଏବଂ ହିରୋସିମା ସହର ଦୁଇଟିକୁ ଆଣବିକ ଅସ୍ତ୍ରଦ୍ୱାରା ଧ୍ୱଂସ କରି ଦେବାପରେ ଏହାହିଁ ପ୍ରମାଣିତ ହୋଇଛି ଯେ ହିଂସାଦ୍ୱାରା ମଣିଷ ହୋଇଯାଏ ରାକ୍ଷସ ଓ ପଶୁ । ସକଳ ଜାତି କୌଣସି ଗୁପ୍ତ ଅସ୍ତ୍ରଦ୍ୱାରା ଦୁର୍ବଳ ଜାତିକୁ କଣ୍ଟ୍ରୋଲ ଦବାଇ ପାରେ । ମାତ୍ର ଦବିଯାଇ ଥିବା ଦୁର୍ବଳ ଜାତିଟି ବି ଏହି ଗୁପ୍ତ ଅସ୍ତ୍ରଟିର ସୂଚକ ପାଇ ତାହାଠୁ

ଆଜିର ମାନବଙ୍କ ଅସ୍ତ୍ର ବିଆଣ୍ଡ କରି ସବଳ ଜାତି ଉପରେ ପୂର୍ବ ଦାଉ ସାଧି ନିଏ । ଏଣୁ ଅସ୍ତ୍ରବାଦୀ ବିଜୟ ପ୍ରକୃତରେ ବିଜୟ ନୁହେଁ । ଭାରତ ଯେ ବିନା ଅସ୍ତ୍ରରେ ଏବଂ ବିନା ରକ୍ତପାତରେ ଶତ୍ରୁର ସକଳ ପ୍ରକାର ଅସ୍ତ୍ରଶସ୍ତ୍ରାଦିକୁ ଅକାମୀ ବୋଲି ପ୍ରମାଣିତ କରି ସ୍ୱାଧୀନ ହେଲା, ହିଂସା ଓ ଅସତ୍ୟ ଉପରେ ଅହିଂସା ଓ ସତ୍ୟର ବିଜୟକୁ ପ୍ରତିଷ୍ଠିତ ଭାବରେ ଏହା ପ୍ରମାଣ କରୁଛି ।

ଯୋଗୀ ଶ୍ରୀ ଅରବିନ୍ଦଙ୍କ ସାଧନା ଓ ତପସ୍ୟା ବଳରେ ଆଜି ଅତିମାନସ ଶକ୍ତି ଜଗତରେ ଅବତରଣ କରି ଅବ୍ୟାହତ କାମ କରିପାରୁଛନ୍ତି ବୋଲି ଶ୍ରୀମା ପ୍ରକାଶ କରିଛନ୍ତି । ପୁରାତନ ପ୍ରସ୍ତର ଯୁଗର ଆଦିମ ମାନବର ମାନସିକ ଚେତନାର ଯେତିକି ବିକାଶ ଘଟିଥିଲା, ମହାବୀର ଆଲେକଜାଣ୍ଡରଙ୍କ ସମୟରେ, ବୁଦ୍ଧଙ୍କ ଯୁଗରେ, ଯିଶୁ ବା ଆଚାର୍ଯ୍ୟ ଶଙ୍କରଙ୍କ ବେଳରେ, ମଣିଷ ମନର ଚେତନାର ସ୍ତରର ନିଶ୍ଚୟ ଅଧିକ ବିକଶିତ ହୋଇଛି । ରାମାୟଣ, ମହାଭାରତ ଆଦିର ମାନବଚରିତ୍ର ଚିତ୍ରଣରେ ଆମେ ଦେଖିବା ଯେ ମଣିଷ ମନର ଚେତନାଶକ୍ତିର ସ୍ତର କେଉଁ ସୀମାକୁ ଯାଇପାରେ । ଶ୍ରୀରାମ, ଶ୍ରୀକୃଷ୍ଣଙ୍କ ଚରିତ୍ରରେ ମାନସିକ ଶକ୍ତିର ଚରମତମ ଉତ୍କର୍ଷତାର ଧାରଣାଟିଏ ଅଧିକା କରୁଛି ଏ ଅତି ମାନସ-ଶକ୍ତି ସମ୍ପନ୍ନ ଅତି ମାନବର ଏକ ଚିତ୍ର ।

ଡାରୱିନଙ୍କ ମତରେ ମନୁଷ୍ୟର ବିକାଶ ପଶୁପକ୍ଷୀଙ୍କ ସ୍ତରରୁ ହୋଇଛି । ଏଣୁ ପଶୁପକ୍ଷୀଙ୍କ ମନଠାରୁ ମଣିଷର ମନ ଅଧିକତର ବିକଶିତ । ଅରବିନ୍ଦଙ୍କ ମତରେ ଜଣେ ସୁସଭ୍ୟ ମଣିଷ ଓ ତାର ମାନସିକ ଶକ୍ତିର ଚରମତମ ବିକାଶ ଶେଷ ସିଦ୍ଧାନ୍ତ ନୁହେଁ । ଚରମତମ ମାନସିକ ଚେତନାର ପରବର୍ତ୍ତୀ ବିକାଶ ହେଉଛି ଅତି ମାନସ ଚେତନା ।

ଭୂତପୂର୍ବ ପ୍ରଧାନମନ୍ତ୍ରୀ ନେହେରୁଙ୍କ ପଞ୍ଚଶୀଳ ନୀତି ବିଶ୍ୱ ଜନତାକୁ ସାମ୍ୟ, ଶାନ୍ତି, ମୈତ୍ରୀ ଓ ପ୍ରେମର ବାଣୀ ଶୁଣାଇଛି । କୌଣସି ଜାତି ତାର ନିଜ ଦର୍ଶନ ବା ଆଦର୍ଶକୁ ଅନ୍ୟ ଜାତି ଉପରେ ନ ଚପାଉ । ପ୍ରତ୍ୟେକ ଜାତି ନିଜକୁ ତାର ନିଜର ସ୍ୱଭାବ ସୁଲଭ ଆଦର୍ଶରେ ଗଢ଼ୁ ଏବଂ ଅନ୍ୟ ଆଦର୍ଶରେ ଚାଲୁଥିବା ଜାତିସହ ପ୍ରେମର ସହିତ ସହାବସ୍ଥାନ କରୁ । କୌଣସି ଜାତି ଅନ୍ୟର ଆଭ୍ୟନ୍ତରୀଣ ସମସ୍ୟାରେ ହସ୍ତକ୍ଷେପ ନ କରୁ । ଯେ କୌଣସି ମତଭେଦ ବିବାଦକୁ ଠେଙ୍ଗା ଦ୍ୱାରା ସାମୟିକ ନିଷ୍ଫଳ ଭାବରେ ସମାଧାନ ନ କରି ଆପୋଷରେ ସମାଧାନ କରାଯାଉ । ଭାରତ ଯୁଗ ଯୁଗ ଧରି ପଞ୍ଚଶୀଳ ନୀତି ପନ୍ଥରେ ଥିବା ସତ୍ୟର ପୂଜାରୀ ହୋଇଆସିଛି । ଅନନ୍ତ ବୈଚିତ୍ର୍ୟ ଓ ସଂମିଶ୍ରଣ ବିଭିନ୍ନତା ମଧ୍ୟରେ ସେ ସର୍ବଦା ସାମ୍ୟ ବା ଐକ୍ୟର ଖୋଜ ରଖି ଆସିଛି । ଭାରତର ଏହି ମହାନ ଓ ବିରାଟ ଦର୍ଶନ ହିଁ ତାର ନିଜସ୍ୱ ଦର୍ଶନ ଅଟେ ଏବଂ ଆଜିପର୍ଯ୍ୟନ୍ତ ସବୁ ଦର୍ଶନ ବା ଆଦର୍ଶ ଏହା ପାଖରେ ହାର ମାନି ନିଜ ନିଜକୁ ଏହାର ବିରାଟ ଗର୍ଭରେ ମିଶାଇ ଦେଇଛନ୍ତି । ନେହେରୁଙ୍କ ପଞ୍ଚଶୀଳ ନୀତି ପନ୍ଥରେ ଏହି ଦର୍ଶନର, ଏହି ଆଦର୍ଶର ସାରବସ୍ତୁ ନିହିତ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଶଙ୍କା କରାଯାଉଥିଲା ଯେ ସମଗ୍ର ପୃଥିବୀ ପୁଣି ଦୁଇଟି ବିପକ୍ଷ ଶିବିରରେ ବିଭକ୍ତ ହୋଇଯିବ ଏବଂ ପୁଣି ଏକ ତୃତୀୟ ନରମେଧ ଯଜ୍ଞର ଉଦ୍‌ଯୋଗ ପର୍ବର ବ୍ୟବସ୍ଥା ହେବ । ମାତ୍ର ଭାରତର ପଞ୍ଚଶୀଳ ନୀତି, ତାର ଆନ୍ତର୍ଜାତୀୟ ନିଷ୍ପକ୍ଷତା ପୃଥିବୀକୁ ଏ ସଦ୍ୟ ଆଶଙ୍କାରୁ ମୁକ୍ତ କରିଛି । ଭାରତର ଆତ୍ମବଳ ଓ ପ୍ରେରଣାରୁ ପୃଥିବୀର ବହୁ ରାଷ୍ଟ୍ର ରୁଷିଆ ବା ଆମେରିକା ପଟରେ ନ ଯାଇ ଗୋଷ୍ଠୀ ନିରପେକ୍ଷ ରହିଛନ୍ତି ।

କୌଣସି ଧର୍ମକୁ ଭିତ୍ତିକରି ରାଷ୍ଟ୍ର ଗଢ଼ିବା ଅତୀତ ଯୁଗରୁ ଆଜି ପର୍ଯ୍ୟନ୍ତ ସଫଳ ହୋଇନ । ଏହି ଐତିହାସିକ ସିଦ୍ଧାନ୍ତକୁ ଅସ୍ୱୀକାର କରି ପାକିସ୍ତାନ ଯେ ଗଢ଼ି ଉଠିଥିଲା, ଅଳ୍ପ କାଳପରେ ବଙ୍ଗଳା ଦେଶଟି ଅଲଗା ହେବାରୁ ନିଶ୍ଚିତ ଭାବରେ ପ୍ରମାଣିତ ହେଲା ଯେ ଧର୍ମଭିତ୍ତିକ ରାଷ୍ଟ୍ରର ପରିକଳ୍ପନା ଏକ ଅବାସ୍ତବ ଦିବାସ୍ୱପ୍ନ ।

ଆମେରିକାର ଭିଏତ୍‌ନାମ ମାଟିରେ ବିଫଳତା, ଇହୁଦୀ ଆରବ କଳି, ରୁଷିଆ ଓ ଚୀନ ଭିତରେ ପରସ୍ପର ପ୍ରତି କାଦୁଅ ଛିଟା, ରୁଷିଆ ଆମେରିକା ଭିତରେ ଦୀର୍ଘକାଳବ୍ୟାପୀ ଶୀତଳ ଯୁଦ୍ଧ, ଏହିସବୁ ଘଟଣାବଳୀ, ଯାହାକି ୨ୟ ବିଶ୍ୱଯୁଦ୍ଧର ଅବସାନ ପରେ ଦେଖାଦେଇଛି, ସେସବୁଥିରୁ ଏହି ସତ୍ୟ ସ୍ୱତଃ ପ୍ରକାଶିତ ହେଉଛି ଯେ ସତ୍ୟର ସବୁଟା ଗୋଟିଏ ଜାତି ବା ବ୍ୟକ୍ତିର ଏକଚାଟିଆ ହୋଇ ରହି ନ ପାରେ । ସତ୍ୟ ସବୁଠି ସମଭାବେ ବିରାଜିତ । କଥା ହେଉଛି ସତ୍ୟର ଯେଉଁ ପଟକୁ ରୁଷ ଦେଖି କହୁଛି ଏଇଟା ହିଁ ସତ୍ୟ, ଆମେରିକା ତାର ବିପରୀତ ପାଖକୁ ଦେଖି କହୁଛି "ରୁଷ ପାଖରେ ସତଟା ନାହିଁ; ମୋରି ପାଖରେ ରହିଛି ।"

ବେଦାନ୍ତ ଉପନିଷଦ ଗୀତାର ସେହି ପୁରାତନ ଆବିଷ୍କୃତ ସତ୍ୟକୁ ବିଂଶ ଶତାବ୍ଦୀରେ ଭାରତରେ ମୁଣ୍ଡ ଟେକିଥିବା ସମସ୍ୟା ସବୁକୁ ଆଖି ଆଗରେ ରଖି ପ୍ରୟୋଗ କରିଗଲେ ଏ ଯୁଗର ବୁଦ୍ଧ ଏବଂ ଏ ଯୁଗର ଯିଶୁ, ମହାତ୍ମା ଗାନ୍ଧୀ । ପଣ୍ଡିତ ନେହେରୁ ସେହି ସତ୍ୟକୁ ହିଁ ଆନ୍ତର୍ଜାତୀୟ କ୍ଷେତ୍ରରେ ପ୍ରୟୋଗ କଲେ । ଇନ୍ଦିରାଜୀ ବି ସେହି ସତ୍ୟକୁ ପ୍ରୟୋଗ କରି ଯାଉଛନ୍ତି । ସେହି ନିଷ୍ପାପ, ନିର୍ବୈର ଏବଂ ନିର୍ଭୀକ ନୀତିକୁ ସେ ଆନ୍ତର୍ଜାତୀୟ କ୍ଷେତ୍ରରେ ପରିପୋଷଣ କରି ଚାଲିଛନ୍ତି । ଇନ୍ଦିରାଜୀଙ୍କ ଅମଳରୁ ରୁଷିଆ ସହିତ ଭାରତର

ଅପେକ୍ଷାକୃତ ନବତନ୍ତ୍ରର ବନ୍ଧୁତାର ଅର୍ଥ ନୁହେଁ ଯେ, ଭାରତ ଆମେରିକା ବା ଚୀନର ଶତ୍ରୁ ପାଲଟି ଗଲା । ଏହାର ଅର୍ଥ ନୁହେଁ ଯେ ବେଦାନ୍ତର ଅଦ୍ୱୈତ ସିଦ୍ଧାନ୍ତ ଓ ଦର୍ଶନକୁ ପ୍ରତ୍ୟାଖ୍ୟାନ କରି ଭାରତ ମାର୍କ୍ସଙ୍କର ନାସ୍ତିକ୍ୟର ଦର୍ଶନକୁ ଗ୍ରହଣ କରିନେଲା । ଗାନ୍ଧିଜୀଙ୍କ ଭାଷାରେ ମୋ ଦେଶକୁ ଭଲ ପାଇବାଦ୍ୱାରା ମୁଁ ଅନ୍ୟ ଦେଶକୁ ଘୃଣା କରୁନା । ତୁମେ ଯାହା ସମ୍ବନ୍ଧ ଶତ୍ରୁତା କରୁଛ, ତାକୁ ମୁଁ ମିତ୍ର-ଦୃଷ୍ଟିରେ ଦେଖିବାର ଅର୍ଥ ନୁହେଁ ଯେ ତୁମକୁ ମୁଁ ଶତ୍ରୁ ଦୃଷ୍ଟିରେ ଦେଖିବାରୁ ତୁମର ଶତ୍ରୁ ସହ ମିତ୍ରତା ବାନ୍ଧିଲି ।

ସତ୍ୟର ବେଦାନ୍ତ ଦର୍ଶନ ସୌଭାଗ୍ୟ ବଶତଃ କୌଣସି ଜାତିର ଭାଗ୍ୟରେ ଯଦି ଘଟି ଯାଇଥାଏ ତ, ତେବେ ଉକ୍ତ ଜାତି ମୃତ୍ୟୁଞ୍ଜୟୀ ଏବଂ ଅମୃତତ୍ୱର ଅଧିକାରୀ ହୁଏ । ଏହି ବେଦାନ୍ତ ଦର୍ଶନରୁ ବଞ୍ଚିତ ଅନ୍ୟ ଜାତିକୁ ତାର ଆଚରଣ ଦୁର୍ବୋଧ୍ୟ ପରି ବୋଧ ହୁଏ । ଭାରତ ଏହିପରି ଏକ ଜାତି । ଯେଉଁ ଋଷିଆ ସହିତ ମୈତ୍ରୀ ବାନ୍ଧି ଆମେରିକା ବା ଚୀନ ଆଡ଼କୁ ବନ୍ଧୁତାର ହସ୍ତ ବଢ଼ାଇବାବେଳକୁ ତାର ଏପରି ଆଚରଣ ମାଓସେତୁଙ୍ଗ ଓ ଫୋର୍ଡଙ୍କୁ ଦୁର୍ବୋଧ୍ୟ ଦେଖାଯାଉଛି; ମାତ୍ର ଭାରତର ଏ ଆଚରଣ କନ୍ଫୁସିୟସ ବା ଯିଶୁଙ୍କୁ ଦୁର୍ବୋଧ୍ୟ ଦେଖାଯାଇ ନଥାନ୍ତା । ଆମେରିକା ଜନତା ଓ ଐଶ୍ୱର୍ଯ୍ୟ ମଦରେ ଯିଶୁଙ୍କୁ ପାସୋରି ଦେଇଛି । ଭାରତ ଯିଶୁଙ୍କ ଭିତରେ କୃଷ୍ଣଙ୍କୁ ଏବଂ କୃଷ୍ଣଙ୍କ ଭିତରେ ଯିଶୁଙ୍କୁ ଦେଖୁଛି । ମାଓ କନ୍ଫୁସିଅସଙ୍କୁ ତାଙ୍କର ଧାଡ଼ି କରି ଦେଇ ବନ୍ଧୁକ ନଳୀରେ ସବୁ ଶକ୍ତି ରହିଛି ବୋଲି ବିଶ୍ୱାସ କରନ୍ତି । ମାତ୍ର ଭାରତ ମାଓ ଦର୍ଶନ ଗ୍ରହଣ ନ କଲେ ବି ସେ ମାଓସେତୁଙ୍ଗଙ୍କ ଭିତରେ ଭୃଗୁରାମଙ୍କ ମୂର୍ତ୍ତି ଦେଖୁଛି ଯେଉଁ ଭୃଗୁରାମଙ୍କ ଆୟୁଧ ବଳରେ ପୃଥିବୀକୁ ୨୧ଥର ନିକ୍ଷତ୍ରୀ କଲେ ବି ଶେଷକୁ

ବହଳ ହୋଇ ଅସ୍ତବ୍ୟାଗ କଲେ । ଭାରତ ନିଷ୍ଠୁର ଓ ନାସ୍ତିକ ର ଖ୍ରୀଷ୍ଟ କମ୍ୟୁନିଷ୍ଟଠାରେ ପ୍ରେମମୟ ଶ୍ରୀକୃଷ୍ଣଙ୍କୁ, ବୁଦ୍ଧଙ୍କୁ ଦେଖପାରେ [illegible]ତା ଓ ଐଶ୍ୱର୍ଯ୍ୟବାଦରେ ମଦାନ୍ଧ ଆମେରିକାର ସାମ୍ରାଜ୍ୟପନ୍ଥଠାରେ ବି ସେ କରୁଣାବତାର ଯିଶୁଙ୍କୁ ଠଉରାଇ ପାରେ । ଭାରତ ମୁହଁରେ ଯାହାଙ୍କୁ ଚୋର, ପାଜି, ବଦମାସ୍, ସଇତାନ, ରାକ୍ଷସ ବା ଫାସିଷ୍ଟ ବୋଲି କହି ଗାଳି ଦିଏ, ଅନ୍ତର୍ଗତରେ ସେ ଶ୍ରୀ ତୁଳସୀ ଗୋସ୍ୱାମୀଙ୍କ ପରି ସବୁଦା ଜପି ଯାଉଥାଏ, "ହେ ରାମ ତୁମେ ହିଁ ସବୁ; ତୁମେ ହିଁ ସଜ୍ଜନ, ତୁମେ ହିଁ ଦୁର୍ଜନ, ତୁମେ ହିଁ ଅମର, ତୁମେ ହିଁ ଫକର ।"

---

# ଦ୍ୱାଦଶ ଅଧ୍ୟାୟ

## ଉପସଂହାର

ଆଚାର୍ଯ୍ୟ ବିନୋବାଙ୍କ ଭୂଦାନ ଗ୍ରାମଦାନ ଯାତ୍ରା ପ୍ରମାଣିତ କରିଛି ଯେ କଥାରେ କେବଳ କାନୁନ ଦ୍ୱାରା ଭାରତରେ ତଥା ପୃଥିବୀରେ ଶୋଷଣମୁକ୍ତ ସମାଜ ବା କମ୍ୟୁନିଜମ କଦାପି ସ୍ଥାପିତ ହୋଇ ପାରିବ ନାହିଁ । ସାରା ଜଗତରେ କମ୍ୟୁନିଜମ ଆସିବ ତ, ତାହା କେବଳ କରୁଣା ବା ହୃଦୟ ପରିବର୍ତ୍ତନ ଦ୍ୱାରା ସମ୍ଭବ ହେବ । ଗ୍ରାମର ଜମିଜମା ଉପରୁ ବ୍ୟକ୍ତିଗତ ମାଲିକାନା ଲୋପ କରି, ଏହି ମାଲିକାନାକୁ ରୁଷିଆ ବା ଚୀନପରି ରାଷ୍ଟ୍ରାୟତ୍ତ ନ କରି ଗାନ୍ଧି ବିନୋବାଙ୍କ ବାଟରେ ଗ୍ରାମାୟତ୍ତ କରିଦେବା ଦ୍ୱାରା ଏହା ସମ୍ଭବ ହେବ । ବନ୍ଧୁକ ବଳରେ ଏହା କରିବାକୁ ଗଲେ ଭାରତ ବିଲାତ ବା ଆମେରିକାର ସମାଜରେ କମ୍ୟୁନିଜମ ସ୍ଥାପିତ ହୋଇ ପାରିବ ନାହିଁ ।

ପିତାମାତା ସେମାନଙ୍କର ଶିଶୁ ସନ୍ତାନମାନଙ୍କୁ ଭୁଲ ଭଟକା କରି ଚାଲି ଶିଖିବା ଆଦିର ସୁବିଧା ସୁଯୋଗ ଦିଅନ୍ତି ମାତ୍ର ସତର୍କ ଦୃଷ୍ଟି ରଖି ଥାଆନ୍ତି, ସେମାନେ ଯିମିତି ହାତ ଗୋଡ଼ ଭାଙ୍ଗି ଅଚଳ ନ ହୁଅନ୍ତି ।

ଗୁରୁ ତାର ଶିଷ୍ୟମାନଙ୍କୁ ସତ୍ୟର ଆବିଷ୍କାର କରିବାକୁ ନାନା ଧନ୍ଦା ମାଧ୍ୟମରେ ଭୁଲ ଭଟକା କରିବାକୁ ସ୍ୱାଧୀନତା ଦିଏ, ମାତ୍ର ଗୁରୁ

ସର୍ବଦା ସଜାଗ ଥାଏ, ଏହି ସ୍ୱାଧୀନତାକୁ ଶିକ୍ଷକମାନେ ଯେପରି ସ୍ୱେଚ୍ଛାଗ୍ରହରେ ପରିଣତ ନ କରନ୍ତୁ, ଏହିପରି ଏକ ଶିକ୍ଷା ପଦ୍ଧତିକୁ ଚଳାଇବାକୁ ଗାନ୍ଧିଜ ଚାହୁଁଥିଲେ; ସେମାନେ ଏହିପରି ଶିକ୍ଷା ପଦ୍ଧତି ଚଳାଇବାକୁ ଡାକରା ଦେଉଛନ୍ତି । ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ଶିକ୍ଷା ପଦ୍ଧତିରେ ଏହି ତତ୍ତ୍ୱହିଁ ରହିଛି ।

ଶିକ୍ଷାକ୍ଷେତ୍ରରେ ବାଳକ ବାଳିକାଙ୍କୁ ସ୍ୱାଧୀନତା ଦେଇ ସତର୍କ ଦୃଷ୍ଟି ରଖିବା ପରି ସ୍ୱାବଲମ୍ବୀ ଗ୍ରାମ ସ୍ୱରାଜ୍ୟ ଗଢିବାକୁ ଚାହିଁଲେ ସରକାରଙ୍କୁ ଏହି ନୀତିଟି ଖଟାଇବାକୁ ପଡ଼ିବ । ଗ୍ରାମରାଜ୍ୟ ଗୁଡ଼ିକ ସେମାନଙ୍କ ଗ୍ରାମସଭା ଜରିଆରେ ଗ୍ରାମର ଜମିଜମା କଥା ବୁଝିବେ; ଗ୍ରାମର ଜମି ସବୁକୁ ପ୍ରତି ବର୍ଷ ବା ୨।୩ ବର୍ଷରେ ଥରେ ଲୋକଙ୍କ ଯୋଗ୍ୟତା ଓ ପ୍ରୟୋଜନ ଅନୁସାରେ ଚାଷ କରିବାକୁ ବାଣ୍ଟିବେ । ସେମାନଙ୍କ ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, ବଜାର, ମନୋରଂଜନ ଆଦି କଥା ସେମାନେ ନିଜେ ବୁଝିବେ । ରାଷ୍ଟ୍ରାୟତ୍ତ ଓ ଗ୍ରାମାୟତ୍ତ ମାଲିକାନା ମଧ୍ୟରେ ସ୍ୱର୍ଗ ନରକର ତଫାତ ରହିଛି । ଆଗ୍ରର୍ଯ୍ୟ ବିନୋବାଙ୍କ ଏକ ରହସିଆ ଉକ୍ତି ମୁଁ ଏଠାରେ ଉଦ୍ଧାର କରୁଛି—

ରାଷ୍ଟ୍ରାୟତ୍ତ ରୁଟି କାରଖାନାର ରୁଟି ଗୁଡ଼ିକ କୌଣସି କାରଣରୁ ବିଷାକ୍ତ ହୋଇଗଲେ ତ ଭାରତବାସୀଙ୍କର ଲୋକେ ସମସ୍ତେ ଏ ରୁଟି ଖାଇ ଅସୁସ୍ଥ ହେବେ । ମାତ୍ର ଗ୍ରାମାୟତ୍ତ କୌଣସି ରୁଟି କାରଖାନାର ରୁଟି ବିଷାକ୍ତ ହେବ ତ କେବଳ ମାତ୍ର ଗୋଟିଏ ଗ୍ରାମର ଲୋକେ ଏ ରୁଟି ଖାଇ ଅସୁସ୍ଥ ହେବେ ।

ତରବାରି ବଳରେ ସାରା ଜଗତକୁ ଗୋଟିଏ କୁଟୁମ୍ବ କରି ଗଢ଼ିବାକୁ ଆଲେକ୍ଜାଣ୍ଡର ଓ ନେପୋଲିଅନ ଦେଖିଥିଲେ ସ୍ୱପ୍ନ

ଦେଖୁଥିଲେ ସେ ସ୍ୱପ୍ନ ଆଜ ପାଣି ଫୋଟକା ପରି ଉଭାଇ ଯାଇଛି । ମାତ୍ର ବିନା ତରବାରୀରେ, ପ୍ରେମ, ମୈତ୍ରୀ, କରୁଣା ଓ ସେବା ବଳରେ ସାରା ବସୁଧାକୁ ଗୋଟିଏ ପରିବାର କରିବାକୁ ଉପନିଷଦର ଋଷିମାନେ, ବୁଦ୍ଧ, ଅଶୋକ, ଯିଶୁ ଏବଂ ଆଚାର୍ଯ୍ୟ ଶଂକର ଯେଉଁ ସ୍ୱପ୍ନ ଗଢିଥିଲେ, ସେହି ସ୍ୱପ୍ନ ତ ଆଜ ଗାନ୍ଧି ଅରବିନ୍ଦଙ୍କଠାରୁ ରୂପାୟିତ ହୋଇଛି । ସେହି ଆଦର୍ଶର ବିବ୍ୟଧ୍ୱଜଧାରୀ ଆଚାର୍ଯ୍ୟ ବିନୋବାଙ୍କ ହୃଦୟରୁ ପ୍ରବାହିତ ହେଉଛି । ଯେଉଁ ଚଣ୍ଡାଶୋକ ବୌଦ୍ଧ ଭିକ୍ଷୁ ଉପଗୁପ୍ତଙ୍କ ସଂସ୍ପର୍ଶରେ ଆସି ଧର୍ମାଶୋକ ପାଲଟିଲେ ସେହି ଅଶୋକଙ୍କର ଆଭାଷ ତ ମୁଁ ଆଜ ଇନ୍ଦିରାଙ୍କ ଠାରେ ଦେଖିବାକୁ ପାଉଛି, ଯେ କି ଶ୍ରୀ ମା ଓ ଆଚାର୍ଯ୍ୟ ବିନୋବାଙ୍କ ସଂସ୍ପର୍ଶରେ ଆସି ଅନୁପ୍ରାଣିତ, ଉଦ୍‌ବୁଦ୍ଧ ଏବଂ ରୂପାନ୍ତରିତ ହୋଇଛନ୍ତି ।

ଏହି କଥା କହିବାବେଳେ ଯଦି ମୋତେ ଲୋକେ ଇନ୍ଦିରାଙ୍କର ଚାଟୁକାର କହନ୍ତି, ମୁଁ ଏହାର ଉତ୍ତରରେ କହିବ ଯେ ଚାଟୁକାର ହେଉଛି ସେହି; ଯିଏ କି ଅର୍ଥ ବା ପଦଲାଳସା ରଖି ଯାହାଠିଁ କିଛି ଗୁଣ ନ ଥାଏ ତାହାଠି ସେହି ଗୁଣ ଆରୋପ କରେ । ମାତ୍ର ଯାହାଠି ପଦ ଲାଳସା ବା ଅର୍ଥ ଲାଳସା ନାହିଁ ଅଥଚ ସେ ଅନ୍ୟବ୍ୟକ୍ତିଠାରେ ପ୍ରତିଭା ଦେଖୁଛି, ବୁଝିବାକୁ ହେବ, ସେ କଦାପି ଚାଟୁକାର ନୁହେଁ । ସେ ହୁଏତ ଅନ୍ୟଠି ଏହି ପ୍ରତିଭା ବା ମହତ୍ ଗୁଣ ଦେଖି ପାରୁଛି, ଯାହାକି ଅନ୍ୟମାନେ ଦେଖିପାରୁ ନାହାନ୍ତି, କମ୍ବା ସେ ଅନ୍ୟଠି ଏହି ପ୍ରତିଭା ବା ଦିବ୍ୟ ଗୁଣ ଗୁଡ଼ିକୁ ରୂପାୟିତ ହେବାକୁ ଆଶା କରୁଛି । ପଦଲାଳସା ବା ଅର୍ଥଲାଳସା ମୋର ଥିବ ଓ ମୁ ଏକ ମୁହଁବଡ଼ ସ୍ତାବକ ହୋଇ ମୋ ପ୍ରତି, ସାରାଜାତି ପ୍ରତି ବିଶ୍ୱାସ ଘାତକ ହେବି । କିନ୍ତୁ ଯଦି ମୁଁ ଯଦି ଇନ୍ଦିରାଙ୍କଠିଁ ମୋର ଭ୍ରାନ୍ତ ଦୃଷ୍ଟିରେ ପ୍ରତିଭା ଓ ଦିବ୍ୟଗୁଣ ଦେଖୁଥାଏଁ, ଏବଂ ଅନ୍ୟମାନେ ସେହି ପ୍ରତିଭାକୁ

ଦେଖି ନ ପାରନ୍ତି, ଏଥିକ ମୋର ଗୁରୁ ନାହାଁନ୍ତି । କାରଣ ଯାର ଦୃଷ୍ଟି ଯେପରି ତାର ସୃଷ୍ଟି ବି ସେହିପରି ହୋଇଯିବ ।

ଦୃଷ୍ଟାନ୍ତସ୍ୱରୂପ ମୁଁ ଯଦି ଈଶ୍ୱରଙ୍କ ଅବତାରଙ୍କ ଧରି ଏକ ଅଦ୍ୱିତୀୟ ମାର୍ଗୀ ଉପାସକ ହେବାକୁ ଚାହୁଁଥିବ ଓ ସ୍ୱପ୍ନ ଦେଖୁଥିବ ତାହେଲେ ତାଙ୍କଠି ସବୁ ଗୁଣ ଓ ଆଚରଣକୁ ମହୀୟାନ୍ କରିବ ।

ମାର୍କସଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଦର୍ଶନ ଏବଂ ମହାନ୍ ଲେନିନ୍‌ଙ୍କ ଦ୍ୱାରା ଏହାର ପ୍ରୟୋଗ ନେଇ ରୁଷ ଓ ଚୀନ ନେତାଙ୍କ ମଧ୍ୟରେ ଯେଉଁ ଗଭୀର ମତଭେଦ ଘଟିଗଲା, ସେହି ଘଟଣାରୁ ବେଦାନ୍ତ ଦର୍ଶନର ନିମ୍ନୋକ୍ତ ମହାବାକ୍ୟର ସାରବତ୍ତା ପ୍ରମାଣିତ ହୋଇଛି ।

"ଏକଃ ସତ୍ ବିପ୍ରାଃ ବହୁଧା ବଦନ୍ତି ।" ସତ୍ୟ ସର୍ବଦା ଏକ ହୋଇଲେ ବି ଦେଶକାଳ ପାତ୍ରକୁ ବିବେଚନା କରି ଜ୍ଞାନୀମାନେ ଏକ ସତ୍ୟକୁ ନାନା ପ୍ରକାରରେ ନାନା ଦୃଷ୍ଟି ଭଙ୍ଗିରୁ ବିଚାର କରନ୍ତି । ଏଣୁ "ମୋର ମତ ଠିକ୍ ତୁମର ମତ ଭୁଲ" ଏହିପରି ଭାବ ଧରିବାରକୁ କାହିଁକି ଯୋଗାଇବା ନିର୍ବୋଧତା ଅଟେ । ଏଣୁ ବିନୋବାଜୀଙ୍କ ଭାଷାରେ ମୁଁ ତ କହିବି ପ୍ରେମ ବିଶ୍ୱରେ ସନ୍ଦେହ ନ କରି ବିଚାର ମନ୍ଥନ କରିବାଟା ଜୀବନବଞ୍ଚିବାର ଉଦ୍ଦେଶ୍ୟ ।

ଯେଉଁ ବ୍ୟକ୍ତି କହେ "ମୁଁ ମନ୍ତ୍ର ଜାଣିଛି, ତୁ କିଛି ଜାଣିନାହୁଁ" ବେଦାନ୍ତ ମତରେ ସେ କିଛି ଜାଣିନାହିଁ । ଯଥା—

"ଯସ୍ୟାମତଂ ତସ୍ୟ ମତଂ,
ମତଂ ଯସ୍ୟ ନ ବେଦ ସଃ"

(କେନୋପନିଷଦ)

ଅର୍ଥାତ୍ ଯେଉଁ ଆତ୍ମା ଭାବେ ଯେ ସେ ସତ୍ୟକୁ ଜାଣିପାରିନାହିଁ, କେବଳ ସତ୍ୟ ଜାଣିବାକୁ ଆଗ୍ରହୀ ହୁଏ । ମାତ୍ର ଯେ ଭାବେ, "ମୁଁ ସବୁ ଜାଣେନ୍ତି" ସେ ପ୍ରକୃତରେ ସତକୁ ଜାଣି ନାହିଁ ।

ମନ୍ତ୍ର :— "ପ୍ରତିବୋଧ-ବିଦିତଂ ମତଂ
ଅମୃତତ୍ୱଂ ହି ବିନ୍ଦତେ ।" (କେନ ଉପନିଷଦ)

ଅର୍ଥାତ ଯେଉଁ ବ୍ୟକ୍ତି ଭାବେ "ସତ୍ୟର ସବୁଠା ଏକଚାଟିଆ ହୋଇ କେବଳ ମୋର ପାଖରେ, ମୋର ଜାତି ବା ଦଳ ପାଖରେ ନାହିଁ, ମାତ୍ର ଏହି ସତ୍ୟ ଅନ୍ୟ ବ୍ୟକ୍ତି, ଅନ୍ୟ ଜାତି ବା ଦଳ ପାଖରେ ବି ରହିଛି, ସେହି ଆତ୍ମାହିଁ ଅମୃତତ୍ୱର ଅଧିକାରୀ ହୁଏ । ମହାତ୍ମାଗାନ୍ଧିଙ୍କ ସତ୍ୟାଗ୍ରହ ନୀତିଟି ଏହି ତତ୍ତ୍ୱ ଉପରେ ପ୍ରତିଷ୍ଠିତ ।

ଐଶ୍ୱର୍ଯ୍ୟଶାଳୀ ଆମେରିକାର ଖୁବ୍ ନିକଟରେ ଛୋଟିଆ କ୍ୟୁବା ଦ୍ୱୀପଟିରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠାରୁ ଏହାହିଁ ସାବ୍ୟସ୍ତ ହେଉଛି ଯେ କୌଣସି ବ୍ୟକ୍ତି ବା ଜାତି ନିଜକୁ ଯେଉଁ ବାଟରେ ଚଳାଇବାକୁ ଦୃଢ଼ନିଶ୍ଚୟ ହୁଏ, ବିଶ୍ୱର ପୁଞ୍ଜିଭୂତ ଶକ୍ତି ବି ତାହାକୁ ସେହି ପଥରୁ ଟଳାଇ ପାରେ ନା । ପୁଣି ଯେଉଁ ବ୍ୟକ୍ତି ବା ଜାତିର ଯେଉଁ ବସ୍ତୁଟି ପ୍ରତି ତୀବ୍ର ବିଦ୍ୱେଷ ଥାଏ, ସେହି ବସ୍ତୁଟି ତାକୁ ସେତିକି ଜଞ୍ଜାଳରେ ପକାଏ । ଆମେରିକା ସରକାର କମ୍ୟୁନିଜମକୁ ଭୂତପରି ଡରେ ଓ ଘୃଣା କରେ । ଆମେରିକାର ଏହି ଆତଙ୍କୋନ୍ମାଦରୁହିଁ କମ୍ୟୁନିଜମ ବିରୋଧରେ ତାର ସକଳ ପ୍ରକାର ମେଣ୍ଟ ଓ ଚକ୍ରାନ୍ତ ଏବଂ ବିପୁଳ ଅସ୍ତ୍ରୀକରଣ ଓ ରଣସଜ୍ଜା । ଡିଆଗ୍ରୋଗ୍ରାସିଆ ଦ୍ୱୀପରେ ରଣଭେଳା ଘାଟି ନିର୍ମାଣ ଠାରୁ ଆରମ୍ଭ କରି, କ୍ଷୁଦ୍ର ଭିଏତନାମ ଉପରେ ଦୀର୍ଘକାଳ ବ୍ୟାପୀ ପ୍ରଚଣ୍ଡ ଆକ୍ରମଣ, ଏବଂ ଅସୁମାରି ନିରୀହ ଲୋକଙ୍କ

ହତ୍ୟା ଏବଂ ଶେଷରେ ମର୍ମଘାତୀ ପରାଜୟ ଓ ଅପମାନ ଜନକ ପଛଘୁଞ୍ଚା କମ୍ୟୁନିଜମ୍ ପ୍ରତି ତୀବ୍ର ବିଦ୍ୱେଷ ଯୋଗୁଁହିଁ ଏହାଙ୍କ ପ୍ରତିକ୍ରିୟାଗୁଡ଼ିକର ପରିପ୍ରକାଶ । ଭାରତ ସରକାରଙ୍କ ଦ୍ୱାରା ଜରୁରୀ ପରିସ୍ଥିତି ଘୋଷଣାକୁ ଆମେରିକା ଓ ଆଉ କେତେକ ପାଶ୍ଚାତ୍ୟ ଜାତି ଯେ କଟୁ ସମାଲୋଚନା କରି, ଭାରତରେ ଗଣତନ୍ତ୍ରକୁ ହତ୍ୟା କରାଯାଇଛି ବୋଲି କୁମ୍ଭୀରର କାନ୍ଦଣା କାନ୍ଦୁଛନ୍ତି, ଏହି ବିଳାପରେ ବି କମ୍ୟୁନିଜମ ପ୍ରତି ତୀବ୍ର ବିଦ୍ୱେଷ କାମକରୁଛି ।

ଆମେମାନେ ସନ୍ଦେହ କରୁଛୁ ଯେ ଭାରତ କମ୍ୟୁନିଷ୍ଟ ହୋଇଗଲା । ପ୍ରତ୍ୟେକ ବ୍ୟକ୍ତି, ଜାତି ଯେଉଁ ଆଚରଣମାନ ଘରେ ବା ବାହାରେ ପ୍ରକାଶ କରେ, ସେହି ସବୁ ଆଚରଣ ପଛରେ ତାର ସ୍ୱଭାବ ମୂଳରେ ଥିବା ଆଦର୍ଶ ବା ଦର୍ଶନହିଁ କାର୍ଯ୍ୟକରେ ଏବଂ ଏହି ସ୍ୱଭାବ ଜାତ ଆଦର୍ଶ ବ୍ୟକ୍ତି ବା ଜାତିର ବାଲ୍ୟାବସ୍ଥାରୁ ହିଁ ଗଠିତ ହୋଇଯାଇଥାଏ । ଯେଉଁ ବ୍ୟକ୍ତି ବା ଜାତିର ଯାହା ସ୍ୱଭାବ, ତାହାକୁ ଶୋଧନ ଓ ମାର୍ଜିତ କରି ରୂପାନ୍ତରିତ କରିଦିଆଯାଇପାରେ କିନ୍ତୁ ସେହି ସ୍ୱଭାବକୁ ଧ୍ୱଂସ କରାଯାଇପାରେ ନାହିଁ । କଳ ବିଗିଡ଼ି ଗଲେ, ତାହାକୁ ମଝିରେ ମଝିରେ ଅଏଲିଂ କରିଦେବା ପରି ସ୍ୱଭାବଟି କାଳର ସ୍ରୋତରେ ମଝିରେ ମଝିରେ ଦୋଷଯୁକ୍ତ ହୋଇ ପଡୁଥିଲେ ତାହାକୁ ଦୋଷମୁକ୍ତ କରି ସୁନଗାମୋପଯୋଗୀ କରି ନେବାକୁ ହୁଏ । ଶୋଧିତ ସ୍ୱଭାବ ହିଁ ସ୍ୱଧର୍ମ ।

କୌଣସି ବିଷୟ ପ୍ରତି ଆସକ୍ତି ବା ଦ୍ୱେଷ ରହିବା ହିଁ ଅମାର୍ଜିତ ସ୍ୱଭାବ ଅଟେ । ଆସକ୍ତି ବା ଦ୍ୱେଷରୁ ସ୍ୱଭାବକୁ ମୁକ୍ତ କରିଦେବା ଦ୍ୱାରାହିଁ ଲୋକ ସ୍ୱଧର୍ମ ପାଳେ । ମୁଁ କହୁଛି ଯେ ଭାରତ ନିଜକୁ ସବୁ ସମୟରେ ଆସକ୍ତି ଦ୍ୱେଷ, କ୍ରୋଧ ଉନ୍ମାଦ ଦ୍ୱନ୍ଦ୍ୱରୁ ନିଜକୁ ମୁକ୍ତ

କରି ଏବଂ କ୍ଷେତ୍ରରେ ତାର ସ୍ୱଭାବକୁ ସ୍ୱଧର୍ମ କରି ଦେଉଛୁ । ମାତ୍ର ଏତିକ ମୁଁ ଜୋର ଦେଇ କହୁଛି ଯେ ତାର କୌଣସି ଜାତି ଓ ତାର ଦର୍ଶନ ପ୍ରତି ଆସକ୍ତି ନାହିଁ କି ଦ୍ୱେଷ ବି ନାହିଁ ।

ଭାରତରୁ ଧର୍ମ ଲୋପ ପାଇଗଲା ବୋଲି ତ ଆମେରିକା ବିଳାପ କରୁଛି । ଆମେରିକା ଯେଉଁ ଦୃଷ୍ଟିରୁ ନୈତିକ ଆଦର୍ଶ ଓ ମାନବିକ ଅଧିକାରକୁ ଦେଖେ, ସେମାନେ ଗଣତନ୍ତ୍ର ତ ପାକିସ୍ଥାନରେ ନାହିଁ କି ଚୀନରେ ବି ନାହିଁ । ଅଥଚ ପାକିସ୍ଥାନ ଲୋକଙ୍କ ପାଇଁ ବା ଚୀନାଲୋକଙ୍କ ପାଇଁ ଆମେରିକାର ଏତେ ସହାନୁଭୂତି ପ୍ରକାଶ ପାଉଛି ।

ଏହି ପୁସ୍ତକରେ ଉପନିଷଦ ବା ମୂଳବେଦାନ୍ତ ଦର୍ଶନ ତତ୍ତ୍ୱର କଳ୍ପିତ ଆଭାସ ଦିଆଯାଇଛି । ଗୌତମ ବୁଦ୍ଧ, ଅଶୋକ, ଯିଶୁ, ଆଚାର୍ଯ୍ୟ ଶଙ୍କର, ପ୍ରଫେଟ ମହମଦଙ୍କଠାରୁ ଆରମ୍ଭ କରି ମହାତ୍ମା ଗାନ୍ଧି, ଆଚାର୍ଯ୍ୟ ବିନୋବା, ଯୋଗୀ ଅରବିନ୍ଦଙ୍କର ଆଦର୍ଶ ବା ଦାର୍ଶନିକ ସିଦ୍ଧାନ୍ତ ଯେ ଉପନିଷଦର ଆବିଷ୍କୃତ ସତ୍ୟଠାରୁ ପୃଥକ ନୁହେଁ, ତାର କଳ୍ପିତ ଚିତ୍ର ମୁଁ ଦେବାକୁ ଚେଷ୍ଟା କରିଛି । ଷୋଡ଼ଶ ଶତାବ୍ଦୀରେ ସାର ଆଇଜାକ ନିଉଟନଙ୍କ ପୂର୍ବବର୍ତ୍ତୀ ଜଣେ ପ୍ରସିଦ୍ଧ ଇଂରେଜ ବୈଜ୍ଞାନିକ ଏବଂ ଦାର୍ଶନିକ ବିଜ୍ଞାନର ଅଗ୍ରଗତି ସମ୍ବନ୍ଧରେ ଯେଉଁ ଭବିଷ୍ୟତ ବାଣୀ ପ୍ରକାଶ କରିଥିଲେ, ସେହି ଭବିଷ୍ୟତ ବାଣୀ ଆଜିକାଲି ଭାବରେ ବିଂଶ ଶତାବ୍ଦୀରେ ଫଳବତୀ ହୋଇଛି । ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଭ୍ୟୁଦୟ ଉନ୍ନତ ଘଟିଛି । ମାତ୍ର ବିଜ୍ଞାନ ସହିତ ଆତ୍ମଜ୍ଞାନର ମିଳନଟି ବାକି ରହିଯାଇଛି । ଗାନ୍ଧିଜୀଙ୍କର ସତ୍ୟ ଅହିଂସା ଓ ସାଧ୍ୟସାଧନର ଏକାତ୍ମ କଥା, ଯୋଗୀ ଅରବିନ୍ଦଙ୍କର ଅତି-ମାନସର ଅବତରଣ ତତ୍ତ୍ୱ, ସନ୍ଥ ବିନୋବାଙ୍କର ସ୍ୱାବଲମ୍ବୀ ଓ ସ୍ୱୟଂ ଶାସିତ ଗ୍ରାମରାଜ୍ୟ ପ୍ରତିଷ୍ଠା ପାଇଁ ସର୍ବୋଦୟ ସମାଜର ଭିତ୍ତି ସ୍ଥାପନ

ଉଦ୍ଦେଶ୍ୟରେ ଗ୍ରାମଦାନ ଯଜ୍ଞ ଏବଂ ଜଗ୍ମ ଜଗତ ଡାକର; ଲେଖକଙ୍କ ବଳିଷ୍ଠ ଲେଖୁଣୀରେ ଗାନ୍ଧି, ଅରବିନ୍ଦ ଏବଂ ବିନୋବାଙ୍କ ଆଦର୍ଶ ଓ ଦର୍ଶନକୁ ରୂପାୟିତ କରିବାକୁ ଅନେକ କଥା ଓ ପଦକ୍ଷେପ, ତାଙ୍କର ୨୫ ସୂତ୍ରୀ ଅର୍ଥନୈତିକ ଯୋଜନା ଲୋକଙ୍କର ଅଭାବ ନିବାରଣ ପ୍ରଶାସନିକ ନୀତି ଏବଂ ଆନ୍ତର୍ଜାତିକ ସମ୍ପର୍କ ପ୍ରତିଷ୍ଠାର ନୀତିକ ଲେଖାର ଦୃଷ୍ଟିଭଙ୍ଗିରେ ବିସ୍ତର କରି ଉପସ୍ଥାପିତ କରିଛନ୍ତି ତଥା ସମଗ୍ର ଜଗତର ମାନବ ସମାଜର ରୂପରେଖ କିପରି ହେବ ତାର ଏକ ଚିତ୍ର ମୁଁ ଏଠାରେ ବାଢ଼ୁଛି ।

ବିଭିନ୍ନ ଜାତି ବା ଦେଶର ସରକାରଙ୍କ ମଧ୍ୟରେ ଯେଉଁ ପ୍ରାଚୀର ବା ବାଡ଼ ରହିଛି, ତାହା ଆଉ ରହିବ ନାହିଁ । କୌଣସି ବିଶିଷ୍ଟ ମତାଦର୍ଶ ବା ଦର୍ଶନ ପ୍ରତି କୌଣସି ଜାତିର ଆସକ୍ତି ବା ଦ୍ୱେଷ ରହିବ ନାହିଁ । ସାରା ପୃଥିବୀରେ ଗୋଟିଏ ମାତ୍ର ସରକାର ରହିବ ଯାହାର ନାମ ବିଶ୍ୱଜାତିସଂଘ ବା ପୃଥିବୀ ବନ୍ଧୁସଂଘ ହୋଇପାରେ । ପୃଥିବୀର ପ୍ରତ୍ୟେକ ଦେଶରେ ଏହି ବିଶ୍ୱଜାତିସଂଘର ଶାଖାପ୍ରଶାଖାମାନ ରହିବ । ଗୋଟିଏ ମାତ୍ର ଧର୍ମ ରହିବ । ଯାହାର ନାମ ହେବ ମାନବ ଧର୍ମ । ମାନବିକତା ଏହି ଧର୍ମର ମୂଳଭିତ୍ତି ହେବ । ଖ୍ରୀଷ୍ଟିୟାନ, ହିନ୍ଦୁ, ମୁସଲମାନ କେହି ଆଉ ନିଜର ଧର୍ମକୁ ବଡ଼ ବୋଲି କହିବାକୁ ଯାଇ ଅନ୍ୟ ଧର୍ମକୁ ଶ୍ରେଷ୍ଠ କହିବେ ନାହିଁ । ପୃଥିବୀର ପ୍ରତ୍ୟେକ ଦେଶରେ ଥିବା ପ୍ରତ୍ୟେକ ଗ୍ରାମ ଅନ୍ନବସ୍ତ୍ରାଦିରେ ସ୍ୱାବଲମ୍ବୀ ସ୍ୱୟଂ ଶାସିତ ଗୋଟିଏ ଗୋଟିଏ ଗ୍ରାମରାଜ୍ୟ, କମ୍ୟୁନ ବା ଗୋଷ୍ଠୀ ପାଲଟିବ ଏବଂ ପ୍ରତି ଗ୍ରାମର ଜମିବାଡ଼ି ବା ଅସ୍ଥାବର ସମ୍ପତ୍ତି ଉପରୁ ବ୍ୟକ୍ତିଗତ ମାଲିକାନା ଉଠିଯାଇ, ଏହି ମାଲିକାନାଟି ଗ୍ରାମରାଜ୍ୟର ଗ୍ରାମ ସଭା ହାତରେହିଁ ରହିବ । ପୃଥିବୀରେ ଥିବା ସହରଗୁଡ଼ିକ ପ୍ରତ୍ୟେକ ନିଜ ନିଜର ଶିଳ୍ପ, କାରଖାନା, ଆମଦାନି ରପ୍ତାନି ସମ୍ପର୍କୀୟ ବେପାର

ଧାର୍ଯ୍ୟ କରିବାକୁ ଦିଆଯିବ ନାହିଁ । ବରଂ ରାଜ୍ୟସଂଘ ବା ତାର ଶାଖା ସରକାରଙ୍କ ବିଧାନସଭାମାନଙ୍କର ନିଷ୍ପତ୍ତିସବୁ ବି ଏହି ସର୍ବସମ୍ମତ ବା ସର୍ବାନୁମତି ପଦ୍ଧତିରେ ହିଁ ଧାର୍ଯ୍ୟ କରାଯିବ ।

ଗ୍ରାମର ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଏବଂ ସ୍ୱାଧୀନତାକୁ ସମ୍ମାନ ଓ ମର୍ଯ୍ୟାଦା କରାଯିବ । ମାତ୍ର ଏହି ବ୍ୟକ୍ତିସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତି ସ୍ୱାଧୀନତାଟି ଯେପରି ସ୍ୱେଚ୍ଛାଚାରିତାକୁ ନ ମୁହାଁଏ ଏବଂ ବ୍ୟକ୍ତିଗତ ସ୍ୱାଧୀନତାଟି ଗ୍ରାମରାଜ୍ୟଟିର ସର୍ବାଙ୍ଗୀନ କଲ୍ୟାଣରେ ନିୟୋଜିତ ହୁଏ, ପ୍ରତି ଗ୍ରାମସଭାର ଏହାହିଁ ମୁଖ୍ୟ ଦାୟିତ୍ୱ ହେବ । ଏଣୁ ପ୍ରାଇମେରୀ ଶିକ୍ଷାରୁ ଆରମ୍ଭ କରି ହାଇସ୍କୁଲ ଶିକ୍ଷା ପର୍ଯ୍ୟନ୍ତ, ସମଗ୍ର ଶିକ୍ଷାନୀତିକି ଗ୍ରାମସଭା ହିଁ ନିୟନ୍ତ୍ରଣ କରିବ ।

ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ଏବଂ ସମାଜର ସମୂହ କଲ୍ୟାଣ ଭିତରେ ଯେଉଁ ବିରୋଧ ଆଜି ଦେଖା ଦେଇଛି, ଯାହାର ପ୍ରତିକ୍ରିୟା ଫଳରେ ଆମେରିକାର ଗୋଷ୍ଠି ଓ ରୁଷିଆର ଗୋଷ୍ଠି ଠିଆ ହୋଇଛି । ଭାରତର ଗୋଷ୍ଠି ନିରପେକ୍ଷ ନୀତି ତଥା ଗାନ୍ଧି ବିନୋବାର ସର୍ବୋଦୟ ମୂଳରେ ଥିବା ଗ୍ରାମ ସ୍ୱରାଜ ଦର୍ଶନଟି ଏହି ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ସମାଜ ମଙ୍ଗଳ ମଧ୍ୟରେ ମୌଳିକ ଭେଦଟିକୁ ଖତମ କରିଦେବ । ଏହି ଦର୍ଶନକୁ ସମଗ୍ର ଜଗତ ନିଶ୍ଚୟ ଗ୍ରହଣ କରିବେ । ଏହି ଦର୍ଶନକୁ ଗ୍ରହଣ କଲେ ରୁଷିଆର ସମାଜବାଦ ଏବଂ ଆମେରିକାର ଗଣତାନ୍ତ୍ରିକ ବ୍ୟକ୍ତିସ୍ୱାତନ୍ତ୍ର୍ୟ ଏକାତ୍ମ ହୋଇଯିବ । ସବୁ ବୈଚିତ୍ର୍ୟ ଓ ବିଭିନ୍ନତା ମଧ୍ୟରେ ଐକ୍ୟର ପ୍ରତିଷ୍ଠା ହେବ ।

ଜୟ ଜଗତ୍ ।